# ସାହିତ୍ୟିକ ମାନସିଂହ

## ଜୀବନ ଓ ପ୍ରତିଭା



ଶ୍ରୀ ଭଗୀରଥି ନେପାକ



ପ୍ରଥମ ସଂସ୍କରଣ—୧୯୭୭

ପ୍ରକାଶକ

ଓଡ଼ିଶା ବୁକ୍ ଷ୍ଟୋର

ବିନୋଦବିହାରୀ, କଟକ-୭୫୩୦୦୨

ମୂଲ୍ୟ—ତିନି ଟଙ୍କା ମାତ୍ର

ବନ୍ଧାଇ ଏକ ଟଙ୍କା ସ୍ୱତନ୍ତ୍ର

# ଏଥିରେ ଅଛି—



## ଦ୍ୱିତୀୟ ଭାଗ

## ସାହିତ୍ୟିକ ମାନସିଂହ

## ଶ୍ରଦ୍ଧାଞ୍ଜଳି : ମାୟାଧର ମାନସିଂହଙ୍କୁ —

"× × × ଶ୍ରେଷ୍ଠ ଏକ ସମାଧିଟି ଶ୍ୟାମଘାସ ପରେ,
ଆଇପାରେ ପଲ୍ଲୀ ବା ନଗରେ,
ଏକମାତ୍ର ଚିହ୍ନରୂପେ
ଘାନ ଏହି ପୃଥିବୀ-ବାସୀର,
ମୃତ୍ୟୁରାଜ୍ୟେ ଯିବ ଯେବେ, ଛାଡ଼ି କୋଳ ମାଆ ଧରଣୀର ।

ବସନ୍ତର ପୁଷ୍ପୋତ୍ସବେ,
ଶାରଦ ଜ୍ୟୋତ୍ସ୍ନାରେ
ସ୍ମରି କେବେ, ମୋ ଦେଶର ଯୁବକ-ଯୁବତୀ;
ଆସି ମୋ ସମାଧି ପରେ
ପୁଷ୍ପ ଢାଳି ପ୍ରୀତିଭରେ
କବରେ ଦେବେ ସେ ଯଦି ଶ୍ରଦ୍ଧାର ଆରତି,
ସେହି ସେ ହୋଇବ ମୋର ଶ୍ରେଷ୍ଠ ପୁରସ୍କାର,
ସେହି ମୋର ମାନଦଣ୍ଡ ଜୀବନ-ଯାତ୍ରାର ।"

—ସମାଧି : ମାନସିଂହ—

## : ଶ୍ରଦ୍ଧାଞ୍ଜଳି :

ତୁମେ କି ମରିଛ କବି ?
ମାନେ ନାହିଁ ମନ,
ମରି ତୁମେ ହୋଇଛ ଅମର
ଏହି ମାଟି ପବନରେ
ଅଗଣିତ ପଲ୍ଲୀ ଓ ସହରେ,
ତୁମ ନାମ ଶୁଭେ ବାରମ୍ବାର ।
ମରି ତୁମେ ହୋଇଲ ଅମର ॥
ତୁମ ଲେଖା ପୋଥିମାନ
ଏ ଦେଶର ଅଭିମାନ ।
ଅଗଣିତ ଲେଖକ ପାଠକ
ତୁମ ପ୍ରତିକୃତି ଆଗେ
ସ୍ନେହ ଆଶୀର୍ବାଦ ମାଗେ ।
ସାରା ଓଡ଼ିଶାରେ ଶୁଭେ ଡାକ,
"ପ୍ରିୟ କବି ମାନସିଂ ଅମର ।
ମରି ନାହିଁ, ହୋଇଛନ୍ତି ଅମର ॥"
ହେ କବି, ସମାଲୋଚକ-ପ୍ରାବନ୍ଧିକ-ନାଟ୍ୟକାର-
ସଂପାଦକ-ଶିକ୍ଷକପ୍ରବର-
ସ୍ପଷ୍ଟବାଦୀ-ସତ୍ୟବାଦୀ-ସଂଗ୍ରାମୀ-ସାଧକ-ବୀର ।
ନୁହଁ ହୀନ, ନଗଣ୍ୟ ମାତର ।
ଏ ଜାତିର ଭୁଲଭ୍ରାନ୍ତି ଧର ନାହିଁ ମନେ ।
କ୍ଷମା ମାଗେ ଶ୍ରୀପଦ୍ମରେ
ତୁମ ମୁଗ୍ଧ ପାଠକ ମୁଁ ଜଣେ ।
ସମାଧି ମୁଁ ପାରି ନାହିଁ କରି
ମୋ ହୃଦୟ-ସିଂହାସନେ

ଅଭିଷିକ୍ତ କର ସପ୍ତଚନେ
'ଏକାନ୍ତ ଏକାଙ୍କୀ' ଭାବକ
ଅଶ୍ରୁ ପୂଜା କର ଜଣ !
'ଧୂପ' ବାଡ଼ି ବଦେଁ ।
ବସନ୍ତର ପୁଷ୍ପୋତ୍ସବ,
ଶାରଦୀୟ ଜ୍ୟୋତ୍ସ୍ନାର ପ୍ଲାବନ ।
ମୋ ସ୍ମୃତିର ବେଳାଭୂମି ପରେ
ଆସେ ଆସେ ତରଙ୍ଗାଇ ଆସେ ॥

ମୁଁ ସଂଗ୍ରାମୀ ଜାନକବି
ଓଡ଼ିଶାର ଲାଂଛିତ ଲେଖକ,
ଅଭିଷିକ୍ତ ସିଂହାସନ ତଳେ ବାଢ଼ିଦିଏ,
ମୋ ମନ ଉଦ୍ୟାନ ତୋଳି
ସବୁଗର କୁସୁମ-ସ୍ତବକ ॥
ପ୍ରୀତିଭରେ, ଶ୍ରଦ୍ଧାଭରେ,
ଅସୀମ ସ୍ନେହରେ,
ଅବନତ କରେ ମୋ' ମସ୍ତକ,
ପ୍ରିୟ କବି-କଥାକାର-ଜାତିଧର୍ମପଦ-
ଭାଷା ସାହିତ୍ୟର କୋଣାରକ ॥
ମାନସିଂହ ମରିପାରେ ନାହିଁ
ମୃତ୍ୟୁ ତାରେ କରିଛି ଅମର ॥
ତୁମକୁ ମୁଁ କରେ ନମସ୍କାର
ବାରମ୍ବାର
ମାନସିଂହ ! ପ୍ରିୟ କବି ମୋର !!

(ମାନସିଂହ ସ୍ମରଣିକାରେ ପ୍ରକାଶିତ)

## : ସଂକ୍ଷିପ୍ତ ଜୀବନୀ :

**ମହାପ୍ରୟାଣ :** ୧୯୭୩ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସ ଏଗାର ତାରିଖ କୁମାରପୂର୍ଣ୍ଣିମୀର ସନ୍ଧ୍ୟା ସମୟରେ ଓଡ଼ିଶାର ପ୍ରଖ୍ୟାତ ବାଣୀପୁତ୍ର ଡକ୍ଟର ମାୟାଧର ମାନସିଂହଙ୍କ ମହାପ୍ରୟାଣ ଘଟିଲା ।

ଆକାଶବାଣୀ କଟକ କେନ୍ଦ୍ରରୁ ଏ ସମ୍ବାଦ ପରିବେଷଣ କରାଯିବା ପରେ ଓଡ଼ିଶାର ଅସଂଖ୍ୟ ଲେଖକ ଓ ପାଠକକୁଳ ଛଳ-ଛଳ ଆଖିରେ କୁହାକୁହି ହେଲେ, ସବୁ ସରିଗଲା ସତରେ ! ଏତେ ବଡ଼ ପ୍ରତିଭା ଏତେ ଶୀଘ୍ର ପୋଡ଼ି ଜଳି ପାଉଁଶ ହୋଇଗଲା ! ଏତେ ବଡ଼ ଘଟଣା ଘଟିଗଲା !

ସେ ଥିଲା ଏକ ବାତ୍ୟାବିଧ୍ୱସ୍ତ କାଳରାତ୍ରି ! ସେ ରାତ୍ରି ଭୟଙ୍କର ରୂପ ଧରି ଆସିଥିଲା, ଅର୍ଦ୍ଧଶତାବ୍ଦୀରୁ ଅଧିକ ଏକ ସଂଗ୍ରାମୀ ଲେଖକର ସାଧନାରେ ପୂର୍ଣ୍ଣଚ୍ଛେଦ ପକାଇବା ପାଇଁ । ଏହି କାଳରାତ୍ରିରେ ଡକ୍ଟର ମାନସିଂହ କଟକର ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ୍ ହସ୍-ପିଟାଲ୍‌ରେ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କଲେ । ଡାକ୍ତରଖାନାକୁ ଯିବା ଜନ୍ମା ତାଙ୍କର ଅସୁସ୍ଥତାର କୌଣସି ସମ୍ବାଦ

ପତ୍ରପତ୍ରିକାରେ ପ୍ରକାଶିତ ହୋଇ ନ ଥିଲା । ଅଜଣା ଅଶୁଣା ଭାବରେ ରାତି ଏଗାରଟା ବେଳେ ତାଙ୍କୁ ଖାନ୍‌ନଗର ଶ୍ମଶାନକୁ ନିଆଗଲା । କବିଙ୍କର ଅଗଣିତ ପୂଜାରୀ-ପୂଜାରୁଣୀ ଗୋଟିଏ ସାଧାରଣ ଚଟ୍ଟିଅଂରରେ ତାଙ୍କୁ ସଣ୍ଟତଜରକୁ ନେବାର ସୌଭାଗ୍ୟ ଲାଭ କରିପାରିଲେ ନାହିଁ । ସମସ୍ତଙ୍କ ପାଇଁ ସାରା ଜୀବନ ଧରି ଗାଇ ଗାଇ, ପରିଶେଷରେ ସେ ଅତୀତ ହୋଇ ଚାଲିଗଲେ । ଆସନ୍ନ ଝଞ୍ଜା ଉପରେ ତାଙ୍କୁ ହଠାତ୍ ଦାହ କରାଗଲା ।

ଜୀବନସାରା ସେ କେବଳ ଦେଇଗଲେ, କିଛି ପାଇଲେ ନାହିଁ । ସେ ଓଡ଼ିଶା ସାହିତ୍ୟ ଏକାଡେମୀ ବା କେନ୍ଦ୍ର ସାହିତ୍ୟ ଏକାଡେମୀର ପୁରସ୍କାର ବିଜେତା ନ ହୋଇ ମଧ୍ୟ ଉତ୍କଳର ଅନ୍ୟତମ ଶ୍ରେଷ୍ଠ ସାହିତ୍ୟିକ ଥିଲେ । ତାଙ୍କ ନାମ ଉଚ୍ଚାରଣ ନ କରି କୌଣସି ସାହିତ୍ୟ ଆଲୋଚନା ସମ୍ପୂର୍ଣ୍ଣ ହୋଇପାରେ ନାହିଁ ।

ଓଡ଼ିଶା ଆଜି ଥରେ ପୂଜ୍ୟ ପୂଜାର ବ୍ୟତିକ୍ରମ କଲା । ତେବେ ଅଭିମାନୀ କବି ମାନସିଂହ ଜୀବନର ସର୍ବଶେଷ ପରିଚ୍ଛେଦରେ ସର୍ବଶ୍ରେଷ୍ଠ ଅଭିମାନ ପ୍ରଦର୍ଶନ ପୂର୍ବକ ଏ ଜାତିକୁ ଯେଉଁ ଚେତାବନୀ ଶୁଣାଇଗଲେ, ତାହା କାଳକାଳକୁ ମନେରହିବ ।

ମାନସିଂହଙ୍କ ମହାପ୍ରୟାଣ ସମ୍ବାଦ ଏକାନ୍ତ ଅପ୍ରତ୍ୟାଶିତ ଥିଲା । ଓଡ଼ିଶାର ଏତେ ବଡ଼ କବି ଓ ସାହିତ୍ୟିକ ଏହିପରି ଭାବରେ ଚୁପଚୁପ୍ ନୀରବରେ ଚାଲିଯିବା କଥା, କେହି କଳ୍ପନା ମଧ୍ୟ କରି ପାରି ନ ଥିଲେ । ତାଙ୍କ ମୃତ୍ୟୁରେ ଆମ ଯୁଗର ସବୁଠୁ ବିଦଗ୍ଧ, ସବୁଠୁ ସୌନ୍ଦର୍ଯ୍ୟପ୍ରବଣ, ସ୍ପର୍ଶକାତର ଏବଂ ଏକାନ୍ତ ଭାବରେ ଉତ୍କଳୀୟ କବିମାନସର ଅବସାନ ଘଟିଲା ।

ଏସବୁ ଲକ୍ଷ୍ୟ କରି 'କବିର ମୃତ୍ୟୁ' ଶୀର୍ଷକ କବିତାରେ ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ ଲେଖିଲେ,

"ଏଇପରି ଚୁପ୍‌ଚାପ୍ ଚାଲିଯିବା ଭଲ,
କାହାକୁ ନ କହି କରି,
ଯେଉଁପରି ତୁମେ ଚାଲିଗଲ ।
ସୂର୍ଯ୍ୟ ଅସ୍ତ ଆଗୁ
ହେମନ୍ତର ଧୂପ ଛୁଇଁ ସଞ୍ଜ
ହେମଶସ୍ୟ ଡାକ ଦେବା ଆଗୁ
ସବୁରିର ଅଜାଣତେ
ଚୁପ୍‌ଚାପ୍ ଚାଲିଯିବା ଭଲ !

କାରଣ ତୁମେ ଜାଣିଥିଲ
ଏଇସବୁ ହଟ୍ଟଗୋଳ, ଧୂନି, ଫୁଲମାଳ
ପାଣିଭଳି ଗାର
ତୁମେ ଜାଣିଥିଲ
ଏମାନଙ୍କ ଲୁବ୍ଧ ଏକ ବିଦୂଷକୀ ଚାଲ୍—
ଉଚ୍ଛୁଳା ହସରି
ତୁମେ ଜାଣିଥିଲ
ଏଠିକାର ହାଲ୍‌ଚାଲ୍—"
× × ଇତ୍ୟାଦି ।

ଜନ୍ମ : ଓଡ଼ିଶାର କଳା-ସାହିତ୍ୟ-ସଂସ୍କୃତିର ପୃଷ୍ଠପୋଷକ, କବି-ସାହିତ୍ୟିକ-ସମାଲୋଚକ-ପ୍ରାବନ୍ଧିକ-ଶିକ୍ଷକ-ସାମ୍ବାଦିକ-ସଂସ୍କାରକ ସମ୍ପାଦକ ଠାକୁର ମାୟାଧର ମାନସିଂହ ୧୯୦୫ ମସିହାରେ ଜନ୍ମମାସ୍ତ ନୀଳାମ୍ବୁ ଚିଲିକା ପରିବେଷ୍ଟିତ କୃଷ୍ଣପ୍ରସାଦ ଥାନା ଅନ୍ତର୍ଭୁକ୍ତ ଏକ

କ୍ଷୁଦ୍ର ପଲ୍ଲୀଗ୍ରାମ 'ନନ୍ଦଳା'ରେ ଜନ୍ମଗ୍ରହଣ କରିଥିଲେ । ଏହି କାବ୍ୟ-ସମୃଦ୍ଧ, ସ୍ନିଗ୍ଧ ପ୍ରାକୃତିକ ପରିବେଶମଣ୍ଡିତ ନନ୍ଦଳା ଗ୍ରାମର ସ୍ମୃତି-ରୋମନ୍ଥନ କରି ଲେଖିଛନ୍ତି —

"ବିସ୍ତୀର୍ଣ୍ଣ ପ୍ରକୃତି ଯହିଁ ଦିଗମ୍ବର ବେଶେ
ବୃକ୍ଷହୀନ-ହେମକାନ୍ତି ସିକତା ବିସ୍ତାରେ
ମହୋଦଧି ତଟ ପ୍ରାନ୍ତେ ! ସିନ୍ଧୁ-ସିକତାରେ
କ୍ରୀଡ଼ନ୍ତି ନିଶୀଥେ ଯହିଁ ଜଳକନ୍ୟାଗଣ
କଥାକୁଞ୍ଜେ ଲୁଚକାଳି, କୋମଳ ଚରଣ
ବୁଡ଼େ ନାହିଁ ବାଲୁକାରେ । ବର୍ଷାରମ୍ଭେ ଯହିଁ
ପୁନ୍ନାଗ କୁସୁମ ଗନ୍ଧ ପ୍ରାଣ ଦିଏ ଦହି
ବିରହୀ ତରୁଣଙ୍କର । କ୍ଷୁବ୍ଧ ପାରାବାର...
ତାଳେ ରତ୍ନ-ମଣି-ରଙ୍ଗ ଦୀର୍ଘ ଊର୍ମିବାର
ସେ ଭୂମିର ପଦତଳେ; ତା' ଗୁରୁ ଗର୍ଜନ
ରଚେ ଯହିଁ ଶାଶ୍ୱତିକ ମୃଦଙ୍ଗ ଘୋଷଣ ।"

ନିଜ ପ୍ରିୟ ପଲ୍ଲୀର ସରସ ସ୍ମୃତି କବିଙ୍କୁ ଅନେକ ପ୍ରେରଣା ଯୋଗାଇଛି ।

କବିଙ୍କୁ ଯେତେବେଳେ ମାତ୍ର ଚାରି ବର୍ଷ ବୟସ, ସେ ପିତା-ମାତାଙ୍କର ସ୍ୱର୍ଗୀୟ ବାତ୍ସଲ୍ୟ ସ୍ନେହରୁ ବଞ୍ଚିତ ହୋଇ ବଡ଼ବାପା ଓ ବଡ଼ମା'ଙ୍କ ଦ୍ୱାରା ଲାଳିତପାଳିତ ହୋଇଥିଲେ । ଏହି ପିତୃହରା, ମାତୃହରା ସନ୍ତାନ ଗ୍ରାମ୍ୟ ପାଠଶାଳାରେ ହିଁ ବିଦ୍ୟା ଆରମ୍ଭ କରି, ପାଶ୍ଚାତ୍ୟ ପଥିକ ହୋଇ ଇଂଲଣ୍ଡର ଡର୍‌ହାମ୍‌ସ୍‌ ବିଶ୍ୱବିଦ୍ୟାଳୟରୁ କାଳିଦାସ ଓ ସେକ୍‌ସପିଅର୍‌ଙ୍କ ଉପରେ ନିବନ୍ଧ ଲେଖି ଡକ୍ଟରେଟ୍‌ ଉପାଧି ନେଇ ଫେରି ଆସିଥିଲେ ।

ସେ ଏକ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରିଥିବା ହେତୁ, ଉଚ୍ଚଶିକ୍ଷା ଲାଭ କରିବା ପଥରେ ଅନେକ ଦୁଃଖକଷ୍ଟର ସମ୍ମୁଖୀନ ହୋଇଥିଲେ । କିନ୍ତୁ କଥା ଅଛି, ମନ ଥିଲେ ଉପାୟ ମିଳେ । ଅଭାବ ଅନାଟନର ବାଧାବିଘ୍ନ ତାଙ୍କୁ ନିଜ ସଂକଳ୍ପରୁ ହଟାଇ ପାରି ନ ଥିଲା । ବରଂ ସେ ସଂକଳ୍ପବଦ୍ଧ ହୋଇ, ଦୃଢ଼ ପଦରେ ବିପଦର ଗୋଟିଏ ପରେ ଗୋଟିଏ ପାହାଚ ଅତିକ୍ରମ କରି, ସଫଳତାର ଶିଖରଦେଶରେ ଦଣ୍ଡାୟମାନ ହୋଇଥିଲେ ।

ଛାତ୍ରାବସ୍ଥାରେ ସେ ବିଭିନ୍ନ ସ୍ତର ଓ ବିଭାଗରେ ନିଜର ଅଲୌକିକ ବିଦ୍ୟାବୁଦ୍ଧିର ପରିଚୟ ପ୍ରଦାନ କରିଥିଲେ । ସେ ଶ୍ରେଣୀ ପରୀକ୍ଷାରେ କୃତିତ୍ୱ ସହକାରେ ଉତ୍ତୀର୍ଣ୍ଣ ହୋଇ ବରାବର ବୃତ୍ତିଲାଭ କରି ଆସୁଥିଲେ ।

ଡକ୍ଟର ମାନସିଂହ ଖୋର୍ଦ୍ଧା ହାଇସ୍କୁଲର ଛାତ୍ର ଥିଲେ । ସେହି ସ୍କୁଲରୁ ପ୍ରବେଶିକା ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀ ଲାଭ କରିବା ପରେ ଓଡ଼ିଶାର ଏକମାତ୍ର ପ୍ରସିଦ୍ଧ କଲେଜ 'ରେଭେନ୍ସା'ରେ ନାଁ ଲେଖାଇଥିଲେ ।

ସେ ଖୋର୍ଦ୍ଧା ସ୍କୁଲରେ ନାଁ ଲେଖାଇଲା ବେଳେ ଓଡ଼ିଶାର ଅନ୍ୟତମ ପ୍ରବୀଣ ଶିକ୍ଷକ ବାଙ୍କନିଧି ପଟ୍ଟନାୟକ ତାଙ୍କର ଶିକ୍ଷାଗୁରୁ ଥିଲେ । ଇତିପୂର୍ବରୁ ସେ ବାଣପୁର ମାଇନର ସ୍କୁଲର ଛାତ୍ର ଥିଲେ ।

ଖୋର୍ଦ୍ଧା ହାଇସ୍କୁଲର ପ୍ରବୀଣ ଶିକ୍ଷକ ବାଙ୍କନିଧି ପଟ୍ଟନାୟକ, ଛାତ୍ର ମାନସିଂହଙ୍କ ଭିତରେ ଉଜ୍ଜ୍ୱଳ ଭବିଷ୍ୟତର ସମ୍ଭାବନା ଦେଖି ତାଙ୍କର ପରମ ସହାୟକ ହୋଇଥିଲେ । ଆପଦ ବିପଦରେ ତାଙ୍କ ପାଖରେ ଛିଡ଼ା ହୋଇ ଆଶ୍ୱାସନାର ବାଣୀ ଶୁଣାଇଥିଲେ ।

ସେତେବେଳେ କବିଙ୍କର କିଶୋର ଅବସ୍ଥା । ସ୍ୱପ୍ନାଳୁର ମନ ନେଇ ସେ ସହରର ଉପକଣ୍ଠରେ ଥିବା ବରୁଣେଇ ପାହାଡ଼କୁ ଯାଇ ପ୍ରକୃତିର ଶୋଭାସଂପଦରେ ନିଜକୁ ହଜେଇ ଦେଉଥିଲେ । ସ୍ନେହକାଙ୍ଗାଳ ମନ ଭିତରେ ଥିଲା ଅନେକ ତୃଷା, ଅନେକ ତୃଷ୍ଣା । ପଦେ ନରମ କଥା ଶୁଣି ନଇଁଯାଉଥିଲେ, ଟିକିଏ କଅଁଳ ସ୍ପର୍ଶ ପାଇଲେ ହଜି-ଯାଉଥିଲେ । ଏହି ସ୍କୁଲ ଜୀବନରେ ହିଁ ତାଙ୍କର କବି-ମାନସର ଉନ୍ମେଷ ଘଟିଥିଲା । ଏଇଠି ଏକ ପ୍ରେମିକ କବିର ଜନ୍ମ ହେଲା । ଖୋର୍ଦ୍ଧା ରହଣିକାଳରେ ସେ ତାଙ୍କର ଶିକ୍ଷାଗୁରୁ ବାଙ୍କନିଧିବାବୁଙ୍କ ସହାୟତାକ୍ରମେ ଅନେକ ବିପଦରୁ ରକ୍ଷା ପାଇଥିଲେ । ତେଣୁ ସାରା ଜୀବନ ଧରି ବାଙ୍କନିଧିବାବୁଙ୍କ ପ୍ରତି ତାଙ୍କ ମନ ଭକ୍ତିରେ ନଇଁପଡ଼ୁଥିଲା ।

ଏହି ଖୋର୍ଦ୍ଧା ହାଇସ୍କୁଲ କଥା ସ୍ମରଣ କରି ସେ ତାଙ୍କ 'ଶିକ୍ଷାବିତ୍ତର ଗାଥା' ପୁସ୍ତକର ପ୍ରଥମ ଅଧ୍ୟାୟରେ ପ୍ରଥମେ ଲେଖିଛନ୍ତି, "ଆମେ ଖୋର୍ଦ୍ଧା ହାଇସ୍କୁଲରେ ପଢ଼ୁଥିବା ବେଳେ ସେହି ହାଇସ୍କୁଲକୁ ଲାଗି ଗୋଟିଏ ସଂସ୍କୃତ ଟୋଲ୍ ଥାଏ । ଟୋଲ୍‌ର ଗୋଟିଏ ହଷ୍ଟେଲ ମଧ୍ୟ ଥାଏ । ଟୋଲ୍‌ରେ କିନ୍ତୁ ପ୍ରାପ୍ତ ପିଲା ଜୁଟନ୍ତି ନାହିଁ । ଟୋଲ୍-ହଷ୍ଟେଲ୍‌ଟିରେ ହାଇସ୍କୁଲର ପିଲାମାନେ ହିଁ ରହନ୍ତି । ସାଧାରଣତଃ ଗରିବ ପିଲାମାନେହିଁ ନିଜର ଗୋଟିଏ ମେସ୍ କରି ସେଠାରେ ଥା'ନ୍ତି । ମୋର ଖୋର୍ଦ୍ଧାର ଛାତ୍ରାବସ୍ଥାର ଅର୍ଦ୍ଧାଧିକ କାଳ ଏଇ ହଷ୍ଟେଲ୍‌ଟିରେ ହିଁ କଟିଯାଇଥିଲା ।

× × ଥରେ ସେହି ଟୋଲ୍ ମେସ୍‌ରେ ଥିବା କେତେକ ପିଲାଙ୍କ ଭିତରେ ପ୍ରତ୍ୟେକର ଭବିଷ୍ୟତ 'ଆମ୍ବିଶନ୍' ବା ଇଚ୍ଛାଭିଳାଷର ଆଲୋଚନା ହେଲା । ସେଠାରେ ଥିବା ଉଦୟନାଥ

ରଥ (ପରେ ଉଚ୍ଚପଦସ୍ଥ କର୍ମଚାରୀ) କହିଲେ, ସେ ଏମ୍. ଏ. ପାଶ୍ କରିବେ; ଡମ୍ବରୁଧର ପଟେଡ଼ା (ଓଡ଼ିଶାର ଜଣାଶୁଣା ଲେଖକ ଓ ସୁଯୋଗ୍ୟ ହେଡ୍‌ମାଷ୍ଟର) କହିଲେ, ସେ ଅନ୍ତତଃ ବି. ଏ. ପାଶ୍ ନ କରି ଛାଡ଼ିବେ ନାହାନ୍ତି; ଟାଙ୍ଗୀ (ପୁରୀ ଜିଲ୍ଲା) ଆଡ଼ର ଜଣେ କୁମ୍ଭଟୀ ଛାତ୍ର ମଧ୍ୟ ପ୍ରକାଶ କଲେ ଯେ, ଅନ୍ତତଃ ବି. ଏ. ଟା ପାଶ୍ ନ କଲେ ପାଠ ହେଲା କ'ଣ? ସେଠାରେ ସେଦିନ ମୁଁ ମଧ୍ୟ ଥିଲି । ସବାଶେଷରେ ମତେ ଯେତେବେଳେ ପଚାରିଗଲା ମୋର ଅଭିଳାଷ କଥା, ମୁଁ ଏହା କହିଥିଲି—"ଯଦି ମୁଁ କୌଣସିମତେ ମାଟ୍ରିକ୍ ପରୀକ୍ଷାଟା ପାଶ୍ କରିପାରେ, ତେବେ ମୁଁ କୌଣସି ସ୍କୁଲରେ ଶିକ୍ଷକତା କରିବି ।"

ସେଦିନର ଛାତ୍ର ମାନସିଂହ କେବଳ ମାଟ୍ରିକ୍ ନୁହେଁ, ରେଭେନ୍‌ସା କଲେଜରୁ ଇଂରାଜୀରେ ସମ୍ମାନର ସହିତ ବି. ଏ ପାଶ୍ କରି ପାଟନାରେ ଯାଇ ଇଂରାଜୀରେ ଏମ୍. ଏ ପଢ଼ିଲେ ଓ ୧୯୩୨ ମସିହାରେ ଏମ୍. ଏ. ପାଶ୍ କଲେ । ସେ ବର୍ଷ ସମଗ୍ର ଓଡ଼ିଶାରୁ ଏମ୍ ଏ. ଓ ଏମ୍. ଏସ୍‌ସି. ଉଭୟ ସର୍ବୋଚ୍ଚ ପରୀକ୍ଷାରେ ପାଶ୍ କରିଥିଲେ ମାତ୍ର ନଅ ଜଣ ଛାତ୍ର । ମାନସିଂହ ଏହି ନଅ ଜଣଙ୍କ ମଧ୍ୟରୁ ଜଣେ ଥିଲେ ।

ମାଟ୍ରିକ୍ ସ୍କୁଲର ଛାତ୍ର ଥିଲାବେଳେ ଶିକ୍ଷକତା ପ୍ରତି ତାଙ୍କ ମନ ଆକୃଷ୍ଟ ହୋଇଥିଲା । ଜୀବନରେ ବହୁକାଳ ଶିକ୍ଷକତା କରି ସେ ନିଜର ମନସ୍କାମନା ଚରିତାର୍ଥ କରିଥିଲେ । ସେ ଜଣେ ଆଦର୍ଶ ଶିକ୍ଷକ ଭାବରେ ସମଗ୍ର ଓଡ଼ିଶାରେ ସୁପରିଚିତ । ନିଜର ଅନିଚ୍ଛା ସତ୍ତ୍ୱେ, ଶିକ୍ଷା ବିଭାଗର ନିର୍ଦ୍ଦେଶକ୍ରମେ ସେ କିଛିଦିନ ଶିକ୍ଷା ପରିସର ମଧ୍ୟରୁ ଅନ୍ୟତ୍ର ଚାଲିଯାଇଥିଲେ । ଏହି ସମୟର ଅନୁଭୂତି ତାଙ୍କ

ପ୍ରାଣରେ ଗଭୀରତା ଭରି ଦେଇଥିଲା । ତାକୁଇ ସ୍ମରଣ କରି ସେ ଲେଖିଛନ୍ତି । "× × ଗତ ତିରିଶ ବର୍ଷ ଧରି ଶିକ୍ଷା ବିଭାଗର ନାନା ସ୍ତରରେ ନାନା ପଦରେ ମୁଁ କାମ କରିଛି । ଏହି ବିଦାୟ ବେଳାରେ ପଛକୁ ଅନାଇ ଦେଖିପାରୁଛି, କେତେ ଅପାରଗତା, ବ୍ୟର୍ଥତା, କେତେ ଅସଂପୂର୍ଣ୍ଣତା, ଏକାଗ୍ରଚିତ୍ତ ଭାବରେ ମୂଳରୁ ଶେଷଯାଏ କେବଳ ଶିକ୍ଷକଟିଏ ରହିଥିଲେ, ହୁଏତ ମୁଁ ପାଇଥାନ୍ତି ଅଧିକ ଶାନ୍ତି ଓ ଆନନ୍ଦ, ଅନେକ ବେଶି କୃତକାର୍ଯ୍ୟତା ଓ ପରିପୂର୍ଣ୍ଣତାର ଅନୁଭବ ଓ ଅନେକ ବେଶୀ ଆତ୍ମତୃପ୍ତି ।"

"× × ମୁଁ ଅନ୍ତତଃ ମୋର କୌଣସି କର୍ମଦ୍ୱାରା ଶିକ୍ଷକତା ବା ଶିକ୍ଷା ବିଭାଗର ଅବମାନନା କେବେହେଲେ କରି ନାହିଁ । ପୂର୍ବ ଗଡ଼ଜାତ ଏଜେନ୍‌ସିର ଶିକ୍ଷା-ପରାମର୍ଶଦାତା ଥିଲାବେଳେ ଆଠମଲ୍ଲିକର ସ୍ୱର୍ଗତ ରାଜା ମତେ ତାଙ୍କ ରାଜ୍ୟର ଦେବାନ ହେବା ପାଇଁ ବ୍ୟକ୍ତିଗତ ଅନୁରୋଧ କରିଥିଲେ । ମୁଁ ବିନା ଦ୍ୱିଧାରେ ମନା କରିଦେଇଥିଲି । ଗଡ଼ଜାତମାନଙ୍କରେ ଶିକ୍ଷା-ପରାମର୍ଶଦାତା ପଦ ଉଠାଇ ଦିଆଗଲା ପରେ, ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍‌ସିର ତତ୍କାଳୀନ ରେସିଡେଣ୍ଟ ଏକ ସମ୍ପୂର୍ଣ୍ଣ ନୂତନ ପୋଷ୍ଟ ସୃଷ୍ଟି କରି, ମତେ ସମଗ୍ର ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍‌ସିର ନାଶନାଲ୍ ସେଭିଂସ୍ ଆଡ଼ଭାଇଜର୍ ପଦରେ ନିଯୁକ୍ତ କରିଥିଲେ । × × କିନ୍ତୁ ଓଡ଼ିଶାର ଶିକ୍ଷା ବିଭାଗରେ ପୁଣି ପଶିବା ପାଇଁ ନାନା ଆଳ ଦେଖାଇ କଟକରେ ସେତେବେଳେ ବସି ରହିଲି ଓ ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ୍ ଏଜେନ୍‌ସିର ରେସିଡେଣ୍ଟଙ୍କୁ ପ୍ରାୟ ଦୁଇମାସ ଅପେକ୍ଷା କରାଇ ରଖିବା ପରେ ଯେତେବେଳେ ଓଡ଼ିଶା ଶିକ୍ଷା ବିଭାଗରେ ପୁଣି ସୁବିଧା ପାଇଲି, ତାର ଦ୍ୱାରା ତାଙ୍କୁ ମନା କରିଦେଲି ।"

ଏହି ଉଦ୍ଧୃତାଂଶରୁ ଡକ୍ଟର ମାନସିଂହଙ୍କ ଶିକ୍ଷକ ଓ ଶିକ୍ଷକତା ପ୍ରତି ଆନ୍ତରିକତାର ଚିହ୍ନ ସୁସ୍ପଷ୍ଟ ।

ସେ ଏହି ଶିକ୍ଷକ ଓ ଶିକ୍ଷକତା ସମ୍ପର୍କରେ ପୁଣି କହନ୍ତି, "ବିଦ୍ୟାଧର ହେବା ଯେତେ ସହଜ, ବିଦ୍ୟାନୁରକ୍ତ ହେବା ସେତେ ନୁହେଁ । ତଥାକଥିତ ଭାବରେ ମାର୍କାମରା 'ମାଷ୍ଟର' ବୋଲାଇବା ଯେତେ ସହଜ ଜଣେ ପ୍ରକୃତ 'ଶିକ୍ଷକ' ହେବା କୌଣସିମତେ ସେତେ ସହଜ ନୁହେଁ । ଟ୍ରେନିଂ ସାର୍ଟିଫିକେଟ ଧରି ଚାକିରି ଖୋଜିବା ଓ ଚାକିରି ପାଇଲା ପରେ ପରେ କେବଳ ସ୍କେଲ୍ ଅଫ୍ ପେ ଓ ଇନ୍‌କ୍ରିମେଣ୍ଟ ଦାବୀ କରିବା ଏବେ ଏ ଦେଶର ଶିକ୍ଷକର ପ୍ରଧାନ କର୍ତ୍ତବ୍ୟ ହୋଇଉଠିଛି । ଏଟା ହେଲା ଚାକିରିଆର, ସେବକର, ମୂଲିଆର ମନୋଭାବ । ପ୍ରକୃତ ଶିକ୍ଷକପ୍ରାଣକୁ ଏପରି ମନୋଭାବ ସଙ୍କୁଚିତ ବା କଳୁଷିତ କରି ନ ପାରେ । ପ୍ରକୃତ ଶିକ୍ଷକ ଏ ସମସ୍ତଙ୍କର ଊର୍ଦ୍ଧ୍ୱକୁ ଉଠି, ନରୋତ୍ତମ ନ ହେଲେହେଁ, ଉତ୍ତମ ନର ହେବାକୁ ଚେଷ୍ଟିତ ହେବା ଉଚିତ । ଜାତିର ନୂତନ ବଂଶ-ଧରଙ୍କ ଆଗରେ ଶିକ୍ଷକମାନେହିଁ ପ୍ରଥମ ଆଦର୍ଶ ପୁରୁଷ ରୂପେ ବିରାଜିତ ନ ରହିଲେ କୋଟି କୋଟି ମୁଦ୍ରା ବ୍ୟୟରେ ନିର୍ମିତ ସ୍କୁଲ-କଲେଜ ବ୍ୟର୍ଥ-ଲକ୍ଷ୍ୟ ହେବା, ଧରି ନେବାକୁ ହେବ । ଛାତ୍ରଙ୍କ ଆଖିରେ ଶିକ୍ଷକହିଁ ଦେଖାଯିବା ଉଚିତ ସବୁ ପ୍ରକାରରେ, ବୀର ପୁରୁଷ ଓ ଉତ୍ତମ ପୁରୁଷ । ପିଲେ ଅନୁଭବ କରିବା ଉଚିତ ଯେ, ତାଙ୍କ ମାଷ୍ଟରଙ୍କ ପରି ଜ୍ଞାନୀ ଲୋକ ନାହିଁ, ଉତ୍ତମ ଲୋକ କେହି ଓ ଆଦର୍ଶ ଲୋକ କେହି ନାହିଁ । ଏହା ଏକାନ୍ତ ବାଞ୍ଛନୀୟ ଓ ସର୍ବଦା ବାଞ୍ଛନୀୟ । ଜାତିର-କିଶୋର କିଶୋରୀଙ୍କ ପ୍ରାଣରେ ଶିକ୍ଷକର ଏହି ଆଦର୍ଶ ଯଦି ଚୂର୍ଣ୍ଣୀଭୂତ ବା କଳୁଷିତ ହୋଇପଡ଼େ, ତେବେ ଶିକ୍ଷା ବିଭାଗ ନାମରେ କୋଟି କୋଟି ଟଙ୍କା ବ୍ୟୟ କରି

ମଧ୍ୟ ଆମେ ଜାତୀୟ ଚରିତ୍ରକୁ ଠିକ୍ ବାଟରେ ଚଳେଇ ପାରିବାନି । ଆଜି ଆମର ଶିକ୍ଷା ବିଭାଗ କେବଳ ନୁହେଁ, ସମଗ୍ର ଜାତୀୟ ଜୀବନରେ ମଧ୍ୟ ଯେଉଁ ଘୋର ବିଶୃଙ୍ଖଳା ଦେଖା ଦେଇଛି, ତାହାର ପ୍ରକୃତ କାରଣ ଏଇଠାରେ । ଏକମାତ୍ର କାରଣ ଏଇ ଯେ, ଏ ଦେଶରେ ଶିକ୍ଷକ ଆଜି 'ଗୁରୁ' ହୋଇ ନାହାଁନ୍ତି; ସେ କେବଳ ମାତ୍ର ଦରମାସର୍ବସ୍ୱ ଏକ 'ଚାକରିଆ' । ଆମର ପାଞ୍ଚ ହଜାର ବର୍ଷର ମହିମାମୟ ଜାତୀୟ ସଂସ୍କୃତିକୁ ପଦାଘାତ କରି ଆଜି ଶିକ୍ଷକତା ଏ ଦେଶର କେବଳ ବଜାରର ପଣ୍ୟ ଦ୍ରବ୍ୟରେ ପରିଣତ ହୋଇପଡ଼ିଛି । ଏକାବେଳେକେ ଉଭେଇ ଯାଇଛି ଶିକ୍ଷକର ମହନୀୟ ବ୍ୟକ୍ତିତ୍ୱର ମୂଲ୍ୟ ।''

ଅଧୁନା ଶିକ୍ଷାକ୍ଷେତ୍ରରେ ଦେଖା ଦେଇଥିବା ଦୁରାରୋଗ୍ୟ 'ବ୍ରଣ' ପ୍ରତି ଡକ୍ଟର ମାନସିଂହ ଯେଉଁ ଅଙ୍ଗୁଳି ନିର୍ଦ୍ଦେଶ କରିଅଛନ୍ତି, ତାହା କେବଳ ଶିକ୍ଷା ବିଭାଗ ନୁହେଁ, ଶାସନ ବିଭାଗ ଓ ଜନସାଧାରଣଙ୍କର ଏକାନ୍ତ ପ୍ରଣିଧାନର ବିଷୟ । ଶିକ୍ଷା ଦେବା ନିମନ୍ତେ ମୃତପ୍ରାୟ ହୋଇଥିବା ଶିକ୍ଷକମାନଙ୍କୁ ଏହା ଏକ ଚେତାବନୀ ମାତ୍ର । ମହାନୁଭବ ଓ ଅଭିଜ୍ଞ ଶିକ୍ଷକ ମାନସିଂହ ନିଜର ଜୀବନକାଳ ମଧ୍ୟରେ ଯେଉଁ ବହୁମୂଲ୍ୟ ଅଭିଜ୍ଞତା ଅର୍ଜନ କରିଥିଲେ, ତା'ରି ଜୋର୍‌ରେ ସେ ଏତେ ବଡ଼ ସତକଥାଟା କହିପାରିଲେ ।

ସ୍ପଷ୍ଟବାଦୀ ମାନସିଂହ ଜୀବନରେ ସତକଥା କହିବାକୁ କେବେହେଲେ ପଛଘୁଞ୍ଚା ଦେଇନାହାନ୍ତି । ଛଳନାର ମୁଖା ପିନ୍ଧି, କାହାର ଦୟା ଉପରେ ନିର୍ଭର କରି ଚଳିବାକୁ ଶିଖି ନାହାନ୍ତି । ସ୍ୱାର୍ଥ-ସଜାଗ ହୋଇ କାହାର ସ୍ତାବକତା କରିବାକୁ ପସନ୍ଦ କରି ନାହାନ୍ତି । ସେ ଯାହା କହିଛନ୍ତି, ଠିକ୍ ଠିକ୍ କହି ଯାଇଛନ୍ତି । ସେ ଡରିଛନ୍ତି କେବଳ ନିଜର ବିବେକକୁ । ସତକଥା କହି ଅନେକ ଦୁଃଖ-

ଯାତନା ଭୋଗ କରିଛନ୍ତି । କିନ୍ତୁ କେବେହେଲେ ମନକଥା ମନରେ ମାରି କହିଁ ଯାଇ ନାହାନ୍ତି । ନିଜ ଅପେକ୍ଷା ନିଜ ଦେଶକୁ, ନିଜ ଜାତିକୁ ବଡ଼ ବୋଲି ମନେକରିଛନ୍ତି ।

ସେ ଚାହିଁଥିଲେ ଜୀବନରେ ଅନେକ ବଡ଼ ପଦବୀରେ ଆସୀନ ହୋଇପାରିଥାନ୍ତେ । କିନ୍ତୁ ଶିକ୍ଷକ-ଜୀବନର ଆକର୍ଷଣ ତାଙ୍କୁ ଆକ୍ରାନ୍ତ କରିଥିଲା । ସେଥିପାଇଁ ସେ ବହୁତ ଉଚ୍ଚ ପଦବୀ ହାତରେ ପାଇ ମଧ୍ୟ ଫିଙ୍ଗି ଦେଇଥିଲେ ।

**କଲେଜଜୀବନ :**—ଖୋର୍ଦ୍ଧା ହାଇସ୍କୁଲରୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ସେ ରେଭେନ୍‌ସା କଲେଜରେ ନାଁ ଲେଖାଇଲେ । ରେଭେନ୍‌ସା କଲେଜର ପଶ୍ଚିମ ଛାତ୍ରାବାସରେ ତାଙ୍କର ରହଣି ହେଲା ।

କଲେଜ ଜୀବନର ଆରମ୍ଭ ବେଳକୁ ସେ କବି ରୂପରେ ଖ୍ୟାତି-ଲାଭ କରିସାରିଥିଲେ । ତାଙ୍କ କବିତାର ନୂତନ ପରିପାଟୀ ଓ ଭାବ ଓଡ଼ିଆ ସାହିତ୍ୟରେ ଆଲୋଡ଼ନ ସୃଷ୍ଟି କରିଥିଲା । ତାଙ୍କ କବିତାର ଭାଷା, ଭାବ, ଶୈଳୀ ଓ ଛନ୍ଦ ପାଠକ ମହଲରେ ଚାଞ୍ଚଲ୍ୟ ଖେଳାଇ-ଦେଇଥିଲା ।

ଉତ୍କଳସାହିତ୍ୟର ସୁଯୋଗ୍ୟ ସମ୍ପାଦକ ଶ୍ରୀ ବିଶ୍ୱନାଥ କର କବି ମାନସିଂହଙ୍କ ବହୁ କବିତା ନିଜ ପତ୍ରିକାରେ ଛାପି ତାଙ୍କୁ ସାହିତ୍ୟକ୍ଷେତ୍ରରେ ବହୁମତେ ଉତ୍ସାହିତ କରିଥିଲେ ।

ସେ ବି. ଏ. ପଢ଼ିଲାବେଳେ 'ପୁଷ୍ପିତା' ଶୀର୍ଷକ ରମ୍ୟ ନାଟିକା ପ୍ରକାଶ ପାଇଥିଲା ।

ଏହା ପୂର୍ବରୁ 'ଭଜକବି' ପ୍ରଗତି ସଂଘ ଦ୍ୱାରା ୧୯୨୮ ମସିହାରେ ପ୍ରକାଶିତ ହୋଇ ସାରିଥିଲା । କବି ପଦ୍ମଚରଣ ପଟ୍ଟନାୟକ

ଅଭିମତ ଦେଇଥିଲେ, "ତମ ବହିର କଳ୍ପନା ଓଡ଼ିଶାରେ ଗୋଟିଏ ନୂଆ କଥା । ଏ ଧରଣର ସୃଷ୍ଟି କେବଳ ଦୃଶ୍ୟ କାବ୍ୟରେ କାହିଁକି, ଆମ ଦେଶର ଆଧୁନିକ ସାହିତ୍ୟର କୌଣସି ବିଭାଗରେ ଏତେ ସୁସ୍ପଷ୍ଟ ଓ କବିତ୍ୱପୂର୍ଣ୍ଣ ଭାବରେ ଫୁଟିଥିବାର ମୁଁ ଦେଖି ନାହିଁ ।"

ବାରବାଟୀ (ଉତ୍କଳ ସାହିତ୍ୟ—ନଭେମ୍ବର ୧୯୨୬), କବିର ନିମନ୍ତ୍ରଣ (ଉତ୍କଳ ସାହିତ୍ୟ—ଫେବ୍ରୁଆରୀ ୧୯୨୭), ପ୍ରାକୃତ ସମ୍ଭାଷଣ (ଉ. ସାହିତ୍ୟ—ଅଗଷ୍ଟ ୧୯୨୭), ବଂଶୀର ଡାକ (ରେଭେନ୍‌ସାଭିଆନ୍—ସେପ୍ଟେମ୍ବର ୧୯୨୭), ଅନାହୂତା (ନଭେମ୍ବର ୧୯୨୭—ଉ. ସାହିତ୍ୟ), ତରୁଣ କବିର ଆଶା (ଉତ୍କଳ ସାହିତ୍ୟ—ଏପ୍ରିଲ ୧୯୨୮) ଗୋପ ତର୍ପଣ (ଉ. ସାହିତ୍ୟ—ଜୁନ ୧୯୨୮), ରୂପସୀର ପୂଜା (ସହକାର-ଅଗଷ୍ଟ ୧୯୨୮), ଉପେକ୍ଷିତା (ସହକାର—ଅଗଷ୍ଟ, ସେପଟେମ୍ବର, ଅକ୍‌ଟୋବର ୧୯୨୮), ନିହତ ଭଗବାନ (ଉ. ସାହିତ୍ୟ—ନଭେମ୍ବର ୧୯୨୯), ପ୍ରଣୟୀ (ଉ: ସାହିତ୍ୟ—ଜାନୁଆରୀ ୧୯୨୯), ପ୍ରେମର ପରିଣାମ (ଉ: ସାହିତ୍ୟ—ମାର୍ଚ୍ଚ ୧୯୨୯), ଦକ୍ଷିଣା ପ୍ରତି (ଉ: ସାହିତ୍ୟ—ଅଗଷ୍ଟ ୧୯୨୯), ମହାନଦୀରେ ଜ୍ୟୋତ୍ସ୍ନା ବିହାର (ଉ. ସାହିତ୍ୟ—ଅକ୍‌ଟୋବର ୧୯୨୯) ରେଙ୍ଗୁନ ଚିଠି (ରେଭେନ୍‌ସାଭିଆନ୍—ଅକ୍ଟୋବର ୧୯୨୯), ଯଥାସ୍ଥାନ (ଉ: ସାହିତ୍ୟ—ନଭେମ୍ବର ୧୯୨୯) ପ୍ରଭୃତି ଲେଖା 'ପୁଷ୍ପିତା' ପୂର୍ବରୁ ପ୍ରକାଶ ପାଇ ମାନସିଂହଙ୍କୁ କବିର ସମ୍ମାନ ଦେଇ ସାରିଥିଲା ।

'ତରୁଣ କବିର ଆଶା' ଉତ୍କଳ ସାହିତ୍ୟ ୩୨।୧ ବୈଶାଖ ୧୩୩୫, ଏପ୍ରିଲ୍ ୧୯୨୮ ମସିହାରେ ପ୍ରକାଶ ପାଇବା ପରେ ଅପରିପକ୍ୱମାନେ ତାଙ୍କୁ ଆକ୍ରମଣ କରିବା ନିମନ୍ତେ ଅଣ୍ଟାଭିଡ଼ି ବାହାରି-

ପଢ଼ୁଥିବା ଦୃଶ୍ୟକୁ ସ୍ମରଣ କରି ତାଙ୍କର ବନ୍ଧୁ ଓ ସହପାଠୀ ଡକ୍ଟର ସଦାଶିବ ମିଶ୍ର କହନ୍ତି; "ମାୟାଧରଙ୍କ କମନୀୟ କବିତା, ତରୁଣ କବିର ଆଶା ଯେତେବେଳେ ଉତ୍କଳ ସାହିତ୍ୟରେ ପ୍ରକାଶିତ ହେଲା, କବି ତ ଶରବ୍ୟ ହେଲେ, ପତ୍ରିକାର ସମ୍ପାଦକ ବିଶ୍ୱନାଥ କର ସୁଦ୍ଧା ରକ୍ଷା ପାଇଲେ ନାହିଁ । ×× ମାତ୍ର ତରୁଣକବିର ବିରାଟ ଆଶା ଏଥିରେ ପ୍ରତିହତ ହେଲା ନାହିଁ । ବି. ଏ. ପଢ଼ିଲା ବେଳେ ପ୍ରକାଶ ପାଇଲା ରମ୍ୟ ନାଟିକା 'ପୁଷ୍ପିତା' । ×× ତାର ମଧ୍ୟ ପ୍ରତିକୂଳ ସମାଲୋଚନା । ମନେଅଛି, ମାନସିଂ ଏ ସମାଲୋଚନାର ଯେଉଁ କୈଫିଅତ୍ ଦେଇଥିଲେ । ତତ୍ପରେ ବିକଶିତ ହେଲା କବିତା-ଉଦ୍ୟାନରେ ଏକ ଅପରୂପ ସୁମନ—"ଧୂପ" । ଏ କବିତା-ଗୁଚ୍ଛର ପ୍ରତ୍ୟେକଟି କବିତା କଲେଜ ହଷ୍ଟେଲରେ ବହୁବାର ଆମ୍ଭେମାନେ ଆବୃତ୍ତି କରିଛୁ । ଅନୁପମ ରସ, ଛନ୍ଦ, ଶୈଳୀ-କଣ୍ଠସ୍ଥ ହୋଇଗଲା । ଏବେ ମଧ୍ୟ ମନେଅଛି । ପରବର୍ତ୍ତୀ କାଳରେ ବହୁ ଲେଖକଲେଖିକା ଏହି ମାୟାଧରୀ ଛନ୍ଦରେ କବିତା ଲେଖିବାର ପ୍ରୟାସ କରିଛନ୍ତି । ମାତ୍ର ଧୂପର କବିତା ଉତ୍କଟ ପ୍ରତିହିଂସାରୁ ରକ୍ଷା ପାଇଲା ନାହିଁ । କବି ପୂର୍ବରୁ ସଚେତନ ଥିଲେ । ଗୋଟିଏ କବିତାରେ ଲେଖିଥିଲେ—

"ନିର୍ମମ ଖାଲି ଖୋଜ ଅପରାଧ,
ସୃଷ୍ଟି କରିବ ମିଛ ଅପବାଦ ।"

ଅପବାଦରେ କବିଙ୍କ ଲେଖନୀ ନିବୃତ୍ତ ହେଲା ନାହିଁ; ମାତ୍ର ସେ ବ୍ୟଥିତ ହେଲେ । ଅନ୍ତରରେ ଆଘାତ ଲାଗିଲା ।

କବିତାର ଧାରା ପରିବର୍ତ୍ତିତ ହୋଇଗଲା । ବହୁଦିନ ପରେ 'ହେମଶସ୍ୟ' ପ୍ରକାଶ ପାଇଲା । ତାର ମୁଖବନ୍ଧ ଲେଖା ଯାଇଥିଲା

କବିତା ଆକାରରେ । ଲେଖା ଥିଲା, ଜଣେ ବନ୍ଧୁ ଲେଖିଛନ୍ତି ସେ ମୁଖବନ୍ଧ । ମାୟାଧର ନାମରେ ଜଣେ କବି ଥିଲେ । ତାଙ୍କ କବିତା ଆଦର ପାଇଥିଲା । ରମ୍ୟଲଳିତ କବିତା ଭାବରେ ଖ୍ୟାତିଅର୍ଜନ କରିଥିଲା; ମାତ୍ର କେତେକ ତଥାକଥିତ ନୀତିବାଗୀଙ୍କର ତାଡ଼ନାରେ ଜର୍ଜରିତ ହୋଇ କବି ସହର ଛାଡ଼ି ବାହାରିଗଲେ ନିଭୃତ ପଲ୍ଲୀ-କୋଳକୁ । ସେଠାରେ ସେ ଆତ୍ମହତ୍ୟା କଲେ । ମୁଁ ଯାଇଥିଲି କବିବନ୍ଧୁଙ୍କର ସେଇ ନିଭୃତ ନିବାସକୁ । ଦେଖିଲି, ଏଣୁତେଣୁ ଗୁଡ଼ିଏ କବିତା ଛିନ୍ନଭିନ୍ନ ହୋଇ ଘରସାରା ପଡ଼ିରହିଛି । କବିଙ୍କର ସେଇ ଲେଖାଗୁଡ଼ିକ ସଂଗ୍ରହ କରି ମୁଁ ଏ କବିତାଗୁଚ୍ଛରେ ପ୍ରକାଶ କରୁଛି ।

ଧୂପ ପୁସ୍ତକର ପ୍ରକାଶକାଳ ୧୯୩୧ ମସିହା । ଉତ୍କଳ ସାହିତ୍ୟ ପ୍ରେସ, କଟକ । ସହକାର ମେ, ୧୯୩୧ ସଂଖ୍ୟାରେ ଗୋଟିଏ ସ୍ୱତନ୍ତ୍ର ଗ୍ଲେଜିଆ କାଗଜରେ ନିମ୍ନଲିଖିତ ବିଜ୍ଞାପନ ଦିଆଯାଇଥିଲା—

ମାୟାଧର ମାନସିଂହଙ୍କ
ପ୍ରଥମ କବିତା ଗ୍ରନ୍ଥ 'ଧୂପ'
ଶୀଘ୍ର ପ୍ରକାଶିତ ହେବ ।
ପ୍ରାଣସ୍ପର୍ଶୀ ପ୍ରେମ କବିତାର ସଂଗ୍ରହ
ପ୍ରାପ୍ୟ ସମସ୍ତ କବିତା ଅପ୍ରକାଶିତ ଥିଲା ।
ଆଗାମୀ ପୂର୍ଣ୍ଣିମାକୁ ଅପେକ୍ଷା କରନ୍ତୁ ।
ସୁନ୍ଦର ଛପା, ଶସ୍ତା ଦାମ୍, ଉପହାରର ଶ୍ରେଷ୍ଠ ସାମଗ୍ରୀ ।

ଜୁନ୍, ୧୯୩୧ ସଂଖ୍ୟାରେ ସହକାର ପତ୍ରିକାରେ ସମ୍ପାଦକ ଧୂପ ଉପରେ ଲେଖିଥିଲେ, "ଲେଖକ ଶ୍ରୀମାନ୍ ମାୟାଧର

ମାନସିଂହ । ୩୨ଟି ପ୍ରେମ କବିତା ପୁସ୍ତକଟିର କଳେବର, କବିତା-ଗୁଡ଼ିକ ଗୀତ ଛନ୍ଦରେ ଲିଖିତ । × ×”

ଏହିପରି ଭାବରେ କଲେଜ ଜୀବନ ଓ କବିତା ଲେଖା ପାଖାପାଖି ହୋଇ ଚାଲିଲେ । ଅନେକ ଝଡ଼ଝଞ୍ଜା ଦେଖା ଦେଇଥିଲେ ମଧ୍ୟ ହାତରୁ କଲମଟିକୁ ଛାଡ଼ିଲେ ନାହିଁ ।

ଛାତ୍ରାବସ୍ଥା ସଂପର୍କରେ ସୂଚନା ଦେବାକୁ ଯାଇ ମାନସିଂହ ତାଙ୍କର ଶିକ୍ଷାବିଦ୍‌ର ଗାଥାରେ କହିଛନ୍ତି, “ମୁଁ ମାଟ୍ରିକୁ୍ୟଲେଶନ୍ ପରୀକ୍ଷାଟା ବି ଟପିପାରିବି, ଏ ଭରସା ମୋର ଆଦୌ ନ ଥିଲା । ଅଙ୍କ ସରସ୍ୱତୀଙ୍କର ଏହି ଅଧମ ଉପରେ ନିରନ୍ତର କରୁଣା ଯୋଗୁଁ ମାଟ୍ରିକୁ୍ୟଲେଶନ୍‌ର ଲୌହ ଫାଟକ ପାର ହୋଇ, ତା’ ଆରପଟେ ଥିବା କଲେଜ-ବିଦ୍ୟାର ସୌଖୀନ ଉଦ୍ୟାନରେ ବୁଲିପାରିବାର କଳ୍ପନା ଏଇ ହତଭାଗ୍ୟ ଜୀବର ସ୍ୱପ୍ନର ବିଷୟ ମଧ୍ୟ କେବେହେଲେ ନ ଥିଲା । କିନ୍ତୁ ସମସ୍ତ ପରି ଜୀବନର ଘଟଣାବଳୀ ପରି, ସେତେ-ବେଳେ ଜୀବନର ପ୍ରାକ୍‌କାଳରେ ହିଁ, ଯାହା ପୂର୍ବରୁ କେବେ କଳ୍ପନା କରିଯାଇ ନ ଥିଲା, ତାହାହିଁ ଅଘଟନ-ଘଟନ ରୀତିରେ କାର୍ଯ୍ୟରେ ଘଟିଲା । ମୋର ନିଜର ଆଶଙ୍କାନୁଯାୟୀ ମୁଁ ଫେଲ୍ ତ ହେଲିନି, ବରଂ ପାଶ୍ କଲି ଫାଷ୍ଟ ଡିଭିଜନ୍‌ରେ ଓ ତା’ ପୁଣି ଡିଭିଜନାଲ୍ ସରକାରୀ ବୃତ୍ତି ସହିତ । ମୁଁ ବାଧ୍ୟ ହୋଇ ସେତେବେଳର କଳ୍ପିତ ସ୍ୱର୍ଗ କଟକ ନଗରକୁ ଆସିଲି କଲେଜରେ ପଢ଼ିବାକୁ ଓ ପରେ ଆଉରି ଆଉରି ବୃତ୍ତି ପାଇବା ଯୋଗୁଁ ଏକ ପ୍ରକାର ବାଧ୍ୟ ହୋଇ ଉପରକୁ ଉପରକୁ ଚାଲିଲି ।”

ରେଭେନ୍‌ସା କଲେଜରେ ସର୍ବଶ୍ରୀ ମାୟାଧର ମାନସିଂହ, ରତ୍ନାକର ଷଡ଼ଙ୍ଗୀ, ଚନ୍ଦ୍ରେଶ୍ୱର ମିଶ୍ର, ସଂଗ୍ରାମକେଶରୀ ରାୟ,

ଉଦୟନାଥ ରଥ, ଦାଶରଥୀ ପାଠୀ, ଶରତଚନ୍ଦ୍ର ମହାରଣା, ସାଧୁଚରଣ ମହାନ୍ତି ପ୍ରମୁଖ କେତେକଜଣ ଉତ୍ସାହୀ ଯୁବକ ମିଶି 'ପ୍ରଗତି ସଂଘ' ଗଢ଼ିଥିଲେ । ଡକ୍ଟର ମାନସିଂହଙ୍କ ପ୍ରଥମ ଦୁଇ ପୁସ୍ତକ 'ଗଜକବ' ଓ 'ଧୂପ' ଏଇ ପ୍ରଗତି ସଂଘ ପକ୍ଷରୁ ପ୍ରକାଶ ପାଇଥିଲା । ଏହି ପ୍ରଗତି ସଂଘ ୧୯୩୩-୩୪ ମସିହାରେ ଓଡ଼ିଆ ସାହିତ୍ୟ-କ୍ଷେତ୍ରରେ ଯଥେଷ୍ଟ ଆଲୋଡ଼ନ ସୃଷ୍ଟି କରିପାରିଥିଲା ।

କଲେଜ ଜୀବନରେ ସେ ମାସକୁ ପଚିଶ ଟଙ୍କା କରି ସରକାରୀ ବୃତ୍ତି ପାଉଥିଲେ ।

ଏହିପରି ଭାବରେ କଲେଜ ପାଠପଢ଼ା ଓ ସାହିତ୍ୟ ପାଖାପାଖି ହୋଇ ଚାଲିଥିଲା ।

ସେ ୧୯୦୫ ମସିହା ନଭେମ୍ବର ୧୩ ତାରିଖ ଦିନ ଜନ୍ମଗ୍ରହଣ କରିଥିବା ବିଷୟ ପାଟନା ବିଶ୍ୱବିଦ୍ୟାଳୟର ବାର୍ଷିକ କାଲେଣ୍ଡରରେ ଉଲ୍ଲେଖ ଅଛି । ୧୯୨୬ ମସିହାରେ ସେ ମାଟ୍ରିକ୍ ଓ ୧୯୨୮ ମସିହାରେ ଆଇ. ଏ ପାଶ୍ କରିଥିଲେ । ପୁଣି ଇଂରାଜୀରେ ଅନର୍ସ ସହ ୧୯୩୦ ମସିହାରେ ବି. ଏ. ପାଶ୍ କରିଥିଲେ । ସେହି ଇଂରାଜୀରେ ଦ୍ୱିତୀୟ ଶ୍ରେଣୀ ପାଇ ୧୯୩୨ ମସିହାରେ ପାଟନାରୁ ଏମ୍. ଏ. ପାଶ୍ କରିଥିଲେ ।

## ଚାକିରୀ ଜୀବନ :

ମାନସିଂହ କହିଛନ୍ତି, ଡେପୋଟି ଚାକିରି ନ ମିଳିବାରୁ ହିଁ ସେ ଶିକ୍ଷାବିଭାଗ ଆଡ଼କୁ ବାଧ୍ୟ ହୋଇ ଆଖି ଫେରାଇଥିଲେ । କିନ୍ତୁ ଜାତିର ଶିକ୍ଷକ ହେବା ପାଇଁ ଯିଏ ଉପଯୁକ୍ତ, ତାଙ୍କୁ ଡେପୋଟୀ ଚାକିରି ନ ମିଳିବା ଦେଶପାଇଁ ଏକ ଶୁଭ ସମ୍ବାଦ ।

ତାଙ୍କ ସମୟରେ ବି. ଏ. ପାଶ୍‌ବାଲଙ୍କୁ ଖାଲି 'ସାକ୍ଷାତ'ରେ ଚାକିରି ଦିଆଯାଉଥିଲା । ମାନସିଂହଙ୍କ ଅନେକ ବନ୍ଧୁ ଡିପୋଟି ହେଲେ । କିନ୍ତୁ ଗୋପବନ୍ଧୁଙ୍କ ମୃତ୍ୟୁ ପରେ ଲେଖକ ମାନସିଂହ ତାଙ୍କ ସଂପର୍କରେ ଉତ୍କଳ ସାହିତ୍ୟ ପତ୍ରିକାରେ 'ଗୋ ତର୍ପଣ', ସମାଜରେ 'ଗୋପ ପ୍ରୟାଣ' ଓ ରେଭେନ୍‌ସା କଲେଜ ମାଗାଜିନ୍‌ରେ ତାଙ୍କ ସଂପର୍କରେ ଏକ ଇଂରାଜୀ ପ୍ରବନ୍ଧ ପ୍ରକାଶ କରିଥିବାରୁ ଇଂରେଜ ଶାସକମାନଙ୍କର ଚକ୍ଷୁଶୂଳ ହେଲେ । ସରକାରୀ ଡେପୁଟି ନିର୍ବାଚନ ସଂପର୍କରେ ସାହେବ ପ୍ରିନ୍‌ସିପାଲ୍ ମି: ଅର୍ଗିଲ ଗୁପ୍ତ ବିବରଣୀରେ ଉଲ୍ଲେଖ କଲେ, "ସେ ଉଭୟ ଶିବିରରେ ରହିବାକୁ ଚାହେଁ ।" ଏଦ୍ୱାରା ଫଳରେ ତାଙ୍କର ଡେପୁଟୀ ହେବା ସମ୍ଭବ ହେଲା ନାହିଁ ।

ମାନସିଂହ ଡି. ଇଡି. ପାଶ୍ କରିବା ପରେ ଗୋଦାବରୀଶ ମିଶ୍ରଙ୍କ ଦ୍ୱାରା ପ୍ରତିଷ୍ଠିତ ବାଣପୁର ହାଇସ୍କୁଲରେ ଶିକ୍ଷକତା କରି-ଥିଲେ । ଏହି ସମୟରେ ସେ ବାଣପୁର ହାଇସ୍କୁଲର ତତ୍କାଳୀନ ପ୍ରଧାନଶିକ୍ଷକ ଶ୍ରୀଯୁକ୍ତ ଶ୍ରୀକୃଷ୍ଣ ମହାନ୍ତିଙ୍କ ପରି ଜ୍ଞାନୀ ଓ ସ୍ପଷ୍ଟବାଦୀ ବ୍ୟକ୍ତିଙ୍କର ସାନ୍ନିଧ ଲାଭ କରିଥିଲେ । ପୁଣି ସେହି ସ୍କୁଲର ତତ୍କାଳୀନ ସଂପାଦକ ଅବସରପ୍ରାପ୍ତ ଇଂରେଜ ସାହେବ ମିଷ୍ଟର ଆଇ. ଏ. ଆଇଜାକ୍ ଓ ତାଙ୍କର ପତ୍ନୀ ଶ୍ରୀମତୀ ଆଇଜାକ୍‌ଙ୍କ ସାନ୍ନିଧ ଓ ଆଦରଲାଭ କରି ନିଜକୁ ସୁଖୀ ମନେକରୁଥିଲେ । କିନ୍ତୁ ମତାନ୍ତର ହେତୁ ତାଙ୍କୁ ସେ ସ୍କୁଲ ପରିତ୍ୟାଗ କରିବାକୁ ପଡ଼ିଲା ।

**ବାଣପୁର ପରେ ନିମାପଡ଼ା :**

ଡକ୍ଟର ମାନସିଂହ ୧୯୩୬ ମସିହାରେ ନିମାପଡ଼ା ସ୍କୁଲରେ ଯୋଗଦେଇ ସେଇଠି-ପ୍ରାୟ ଦୁଇ ବର୍ଷ କାଳ ଅତିବାହିତ କରିଥିଲେ ।

ନିମାପଡ଼ା ରହଣିକାଳ ମଧ୍ୟରେ ସେ ଇଂରାଜୀ ଭାଷାରେ ଆଧୁନିକ ଓଡ଼ିଆ ସାହିତ୍ୟ ଉପରେ ଯେଉଁ ସନ୍ଦର୍ଭ ଲେଖିଥିଲେ, ତାହା ମାନ୍ଦ୍ରାଜରୁ ପ୍ରକାଶ ପାଉଥିବା 'ଇଣ୍ଡିଆନ ରିଭ୍ୟୁ'ରେ ବାହାରିଥିଲା ।

ନିମାପଡ଼ାରେ ଶିକ୍ଷକତା କଲାବେଳେ ତାଙ୍କର ମାସିକ ଦରମା ଥାଏ ଷାଠିଏ ଟଙ୍କା । ସେ ସ୍ୱତନ୍ତ୍ର ଘରେ ନ ରହି ସ୍କୁଲ୍ ହଷ୍ଟେଲର ଗୋଟିଏ କୋଠରୀରେ ରହୁଥା'ନ୍ତି । ଏହି ଟଙ୍କାରୁ ସେ ବାପାଙ୍କ ପାଖକୁ ଓ ସାନଭାଇ ଭାଇର ପାଠପଢ଼ା ପାଇଁ ପ୍ରତିମାସ କିଛି କିଛି ଟଙ୍କା ପଠାଉଥିଲେ । ବାଣପୁର ଓ ନିମାପଡ଼ା ରହଣି ମଧ୍ୟରେ ସେ ଆର୍ଥିକ ଦୁରବସ୍ଥାର ସମ୍ମୁଖୀନ ହେଉଥିଲେ ।

## ଭବାନୀପାଟଣାରେ ଶିକ୍ଷକତା :

ଏହି ଆର୍ଥିକ ଦୁରବସ୍ଥାର ଦୂରୀକରଣ ନିମନ୍ତେ ସେ ସୁଦୂର (କଳାହାଣ୍ଡି) ଭବାନୀପାଟଣା ହାଇସ୍କୁଲର ସହକାରୀ ପ୍ରଧାନଶିକ୍ଷକ ପାଇଁ ଦରଖାସ୍ତ କଲେ । କାରଣ ଏହି ସହକାରୀ ଶିକ୍ଷକଙ୍କ ଦରମା ଥିଲା ନବେ ଟଙ୍କା । ମାନସିଂହଙ୍କୁ ଭବାନୀପାଟଣାର ସହକାରୀ ଶିକ୍ଷକ ପଦବୀ ମିଳିଗଲା । ତେଣୁ ସେ ନିମାପଡ଼ା ସ୍କୁଲରୁ ଭବାନୀପାଟଣା ଯାତ୍ରା କଲେ ।

ସେତେବେଳେ ଭବାନୀପାଟଣାରେ ଟଙ୍କାକୁ ୩୦ ସେର ଚାଉଳ । ଦୁଧ ସେର ଚାରି ଅଣା । ସବୁ ଜିନିଷ ଶସ୍ତା ।

ଭବାନୀପାଟଣାରେ ସେ ସସ୍ତ୍ରୀକ ପ୍ରାୟ ଏକବର୍ଷ ଥିଲେ । ଏଇଠି ତାଙ୍କର ପ୍ରଥମ ସନ୍ତାନ ପ୍ରାପ୍ତି ହେଲା ।

ଭବାନୀପାଟଣା ରହଣିକାଳ ମଧ୍ୟରେ ସେ ଆର୍ଥିକ ଅଭାବ ଅନାଟନ ଭୋଗ କରି ନ ଥିଲେ । ପ୍ରତିମାସ କିଛି କିଛି ଅର୍ଥ ବଳାଇ ସେ ବିଲାତ ଯିବାର ଯୋଜନା କରୁଥିଲେ ।

**ପାଶ୍ଚାତ୍ୟ ପଥିକ :**

ଡକ୍ଟର ମାନସିଂହ ତାଙ୍କ ବିଲାତ ଯାତ୍ରା କଥା ବର୍ଣ୍ଣନା କରି କହିଅଛନ୍ତି, "ଷ୍କେଟ୍ସ୍‌ମାନ କାଗଜରେ ଜାପାନୀ ଜାହାଜମାନଙ୍କର ବିଜ୍ଞାପନ ଦେଖି ଟମାସ୍ କୁକ୍ ସାହାଯ୍ୟରେ ଶସ୍ତା ଯାତ୍ରାର ଆୟୋଜନ କଲି । ସବୁ ବ୍ୟବସ୍ଥା ସେଇ ଭବାନୀପାଟଣାରେ ବସି ବସି ହିଁ କରିଥିଲି । ଟିକେଟ୍ ବାଦ ହାତରେ ଟଙ୍କା ୨୫୦ଟା ଧରି ବାହାରି ପଡ଼ିଥିଲି ସେଦିନ ଅଜ୍ଞାତ ଜଗତ ଅଭିମୁଖରେ । × × ×"

"କଲମ୍ବୋରୁ ଏଡିନ୍‌ବରା ପର୍ଯ୍ୟନ୍ତ ମୁଁ ମୋର ଚତୁର୍ଦ୍ଦିଗରେ ଯେଉଁ ନୂତନ ସଂସାର ମେଳି ହୋଇଯାଉଥିବାର ଦେଖି ଦେଖି ଯାଉଥିଲି, ସେଇଥିରେହିଁ ମୁଁ ହୋଇଯାଇଥିଲି ମୁଗ୍‌ଧ ଓ ପ୍ରସନ୍ନ । ଘର ଛାଡ଼ିବା ପୂର୍ବରୁ କେବଳ ନୂତନ ରାଜ୍ୟ ଓ ନୂତନ ସଭ୍ୟତା ଦେଖିବାର କୌତୂହଳ ଛଡ଼ା, ମୋର ଅନ୍ୟ କୌଣସି ହେଲେ ନିର୍ଦ୍ଧାରିତ ଲକ୍ଷ୍ୟ ନ ଥିଲା । ପରେ ପ୍ରାପ୍ତ ଡିଗ୍ରୀଟା ଆନୁଷଙ୍ଗିକ ଲାଭ ମାତ୍ର । କି ଡିଗ୍ରୀ, ଦେଶକୁ ଫେରିଲେ ସେ ଡିଗ୍ରୀର କି ଉପଯୋଗିତା ଏ ସବୁର କୌଣସି ହେଲେ ଯୋଜନା ମୁଁ କରି ଯାଇ ନ ଥିଲି । ଫଳରେ ମୁଁ ସେ ଦେଶରେ ମାସେ ଖଣ୍ଡେ କିଛି ଠିକ୍ କରି ନ ପାରି କେବଳ ଏପଟ ସେପଟ ହେଲି ।" (ଶିକ୍ଷାବିଦ୍‌ର ଗାଥା)

ପରେ ଡକ୍ଟର ଲଙ୍ଗଲମ (ଏଡ଼ିନ୍‌ବରା ବିଦ୍ୟାଳୟର ତତ୍କାଳୀନ କେମିଷ୍ଟ୍ରି ପ୍ରଫେସର)ଙ୍କ ପରାମର୍ଶ ଗ୍ରହଣ କରି କାଳିଦାସ ଓ ସେକ୍‌ସପିଅରଙ୍କ ମଧ୍ୟରେ ତୁଳନାତ୍ମକ ସନ୍ଦର୍ଭ ଲେଖି ସେ ପିଏଚ୍. ଡି. ଲାଭ କରିଥିଲେ ।

ବିଲାତ ରହଣିକାଳ ମଧ୍ୟରେ ଅର୍ଥସଂକଟ କାରଣରୁ ହାତରେ ରାନ୍ଧି ଖାଉଥିଲେ । ତାଙ୍କର ହଳେ ମାତ୍ର ପୋଷାକ ଥିଲା ।

ତେଣୁ ସେଇଠିକି ଯେଉଁଦିନ ସଫା କରୁଥିଲେ, ସେଦିନ ଘର ବାହାରକୁ ଯିବା ଆପେ ଆପେ ବନ୍ଦ ହୋଇଯାଉଥିଲା ।

ଏହିପରି ଭାବରେ ବିଚିତ୍ର ଅଭିଜ୍ଞତା ସଙ୍ଗରେ ଡରହାମ୍ ବିଶ୍ୱବିଦ୍ୟାଳୟରୁ ପି ଏଚ୍. ଡି. ଉପାଧି ନେଇ ୧୯୩୯ ମସିହାରେ ସେ ଭାରତ ପ୍ରତ୍ୟାବର୍ତ୍ତନ କରିଥିଲେ ।

ତାଙ୍କର ବିଲାତ ରହଣି କଥା 'ପାଶ୍ଚାତ୍ୟ ପଥିକ' ଶୀର୍ଷକ ପୁସ୍ତକରେ ସେ ବିଶଦଭାବରେ ବର୍ଣ୍ଣନା କରିଅଛନ୍ତି ।

ପାଶ୍ଚାତ୍ୟ ଦେଶରେ ଶିକ୍ଷାଲାଭ କରିଥିବା ହେତୁ ତାଙ୍କ ଚିନ୍ତାଧାରା ବହୁ ଭାବରେ ପାଶ୍ଚାତ୍ୟ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇଥିଲା । ଶିକ୍ଷା, ସମାଜ, ସଂସ୍କୃତି ବିଷୟରେ ନିଜର ସ୍ୱାଧୀନ ମତାମତ ପ୍ରଖ୍ୟାପନ କରିବା ପାଇଁ ସେ କେବେହେଲେ ଭୟ କରୁ ନ ଥିଲେ । ଶିକ୍ଷା ବିଭାଗରେ ଗୁରୁଜୀ କରି ସୁଦ୍ଧା ଡି. ପି. ଆଇ. ଠାରୁ ଆରମ୍ଭ କରି ସେକ୍ରେଟାରୀ, କମିଶନର, ଶିକ୍ଷାମନ୍ତ୍ରୀ, ମୁଖ୍ୟମନ୍ତ୍ରୀ କାହାକୁ ହେଲେ ନିଜ କଲମରୁ ବାଦ ଦେଉ ନ ଥିଲେ । ନିଜ ଦୃଷ୍ଟିକୋଣରୁ ବିଚାର କରି ଯେଉଁଠି ସେ ଭୁଲ ଦେଖୁଥିଲେ, ସେଇଠି ସେ ମୁହେଁ ମୁହେଁ ଓ ଲେଖାରେ ପ୍ରତିବାଦ କରୁଥିଲେ । ଯେଉଁ କଥା ଅନ୍ୟମାନେ କହିବେ ବୋଲି ଭାବୁଥିବେ, ଅଥଚ ଗୁରୁଜନଙ୍କୁ ନଜରରେ ପକାଇ ଚୁପ୍‌ଚାପ ହୋଇ ବସିଥିବେ ସୁଯୋଗ ଅପେକ୍ଷାରେ, ସୁଯୋଗ-ଦୁର୍ଯୋଗ କଥା ବିଚାର ନ କରି ମାନସିଂହ ସେହିକଥା ହିଁ କାଗଜରେ ବାହାର କରି ଦେଇଥିଲେ ।

ଅନେକେ କହନ୍ତି, ଏହି ସ୍ପଷ୍ଟବାଦିତା ହେତୁ ମାନସିଂହ ଉପର ପାହାଚକୁ ଉଠିପାରିଲେ ନାହିଁ ବା ଯେଉଁଠି ବସିବା କଥା, ସେଇଠି ବସିପାରିଲେ ନାହିଁ । କିନ୍ତୁ ମାନସିଂହ ଯେଉଁ ପାହାଚରେ ଛିଡ଼ା

ହୋଇଥାଅନ୍ତୁ ବା ଯେଉଁଠି ବହିଥାଆନ୍ତୁ ନା କାହିଁକି, ସେ ଯାହା ଲେଖିଛନ୍ତି, ଓଡ଼ିଶାର ବହୁସଂଖ୍ୟକ ପାଠକପାଠିକାମାନେ ତାକୁ ପଢ଼ି ମନେ ରଖିଛନ୍ତି ଓ ଆଗାମୀ ଯୁଗର ଓଡ଼ିଆମାନେ ତାହା ପଢ଼ି ତହିଁରୁ ଅନେକ ଖୋରାକ ପାଇପାରିବେ ।

## ବିଲାତରୁ ଫେରିବା ପରେ :

ବିଲାତରୁ ପିଏଚ୍. ଡି. ଡିଗ୍ରୀ ପାଇ ଫେରିଲା ପରେ ମଧ୍ୟ ତାଙ୍କୁ ଓଡ଼ିଶାରେ ଉପଯୁକ୍ତ ଚାକିରୀ ଖଣ୍ଡେ ମିଳିଲା ନାହିଁ ।

୧୯୩୯ ମସିହାରେ ସେ ଓଡ଼ିଶାକୁ ଡିଗ୍ରୀ ନେଇ ଫେରିଆସି ୧୯୪୭ରେ କିଛି ସମୟ ପାଇଁ ରେଭେନସା କଲେଜରେ ଅସ୍ଥାୟୀ ନିଯୁକ୍ତ ପାଇଥିଲେ । କିନ୍ତୁ ପବ୍ଲିକ୍ ସର୍ଭିସ୍ କମିଶନ ତାଙ୍କ ନାମ ସୁପାରିଶ୍ କଲେ ନାହିଁ ।

ଆଶ୍ଚର୍ଯ୍ୟ ! ମାଟ୍ରିକ୍ ଠାରୁ ଏମ୍. ଏ. ପର୍ଯ୍ୟନ୍ତ ସବୁ ସ୍ତରରେ କୃତି ଛାତ୍ର । ବିଲାତରୁ ଇଂରାଜୀ ବିଷୟରେ ଉଚ୍ଚ ଡିଗ୍ରୀଲାଭ । ଅଥଚ ଓଡ଼ିଶାର ପବ୍ଲିକ୍ ସର୍ଭିସ କମିଶନ୍ ପାଇଁ ଅଯୋଗ୍ୟ ବିବେଚିତ !!

ଏହାପରେ ସରକାରୀ ଚାକିରୀ ଛାଡ଼ି ବିଭିନ୍ନ ବେସରକାରୀ ହାଇସ୍କୁଲରେ ଶିକ୍ଷକତା କରିବା ପାଳି ପଡ଼ିଥିଲା ଡକ୍ଟର ମାନସିଂହଙ୍କ ଉପରେ । ହେଡ୍‌ମାଷ୍ଟର, ଇନସ୍‌ପେକ୍ଟର, ଶିକ୍ଷା-ପରାମର୍ଶଦାତା, ପ୍ରିନ୍‌ସିପାଲ୍, ସୋସାଲ୍ ଏଡ୍‌ୁକେଶନ ଅଫିସର ପ୍ରଭୃତି କେତେ କାମ ।

ଡକ୍ଟର ମାନସିଂହ ନିଜ କଲମରେ ଲେଖିଛନ୍ତି, "ଏଇ ଲେଖକର ଏଇ କ୍ଷୁଦ୍ର ଜୀବନରେ ତା'ର ତିନୋଟି ଜନ୍ମାନ୍ତର ଘଟି-ଯାଇଛି ବୋଲି ସେ ମନେକରେ । ଥରେ ତ ମା' ଜନ୍ମ ଦେଇଥିଲେ, ତାର ଦ୍ୱିତୀୟ ଜନ୍ମ ଘଟିଲା ପ୍ରକୃତରେ ଇଂଲାଣ୍ଡ-ପ୍ରବାସ ଫଳରେ ।

ବୃତ୍ତିସୂ ଜନ୍ମାନ୍ତର ଦେଇ ସେ ଯାଉଛନ୍ତି ଏଇ ବର୍ତ୍ତମାନ, ଗଙ୍ଗାଧର ମେହେରର କଲେଜ ଗ୍ରୁଡ଼ଙ୍କ ଘରଠାରୁ, ଜୀବନର ଶେଷ ପାଦରେ, ଏ ଦେଶ ଓ ଜାତି ଓ ମନୁଷ୍ୟ ନାମକ ପ୍ରାଣୀକୁ ପ୍ରଥମ କରି ଘନିଷ୍ଠ ଭାବରେ ଜାଣିବା ପରେ । (ଶି: ବ: ଗାଥା—ପୃ· ୪୦)

୧୯୪୦ରୁ ୧୯୦୯ ଯାଏ ଏହି ସୁଦୀର୍ଘ ନଅ ବର୍ଷକାଳ ସେ ଆଠଗଡ଼ ହାଇସ୍କୁଲରେ ପ୍ରଧାନଶିକ୍ଷକ, ପୂର୍ବତନ ଗଡ଼ଜାତ-ମାନଙ୍କରେ ଶିକ୍ଷା ପରାମର୍ଶଦାତା ଓ ଉଭୟ ଉତ୍ତର ଓ ଦକ୍ଷିଣ ଓଡ଼ିଶାରେ ସ୍କୁଲ ଇନସ୍‌ପେକ୍ଟର ଭାବରେ କାର୍ଯ୍ୟ କରିଥିଲେ । ଏହାପରେ ସମ୍ବଲପୁର କଲେଜରେ ସେ ଅଧ୍ୟକ୍ଷ ଭାବରେ ସାତ ବର୍ଷ କାଳ କଟାଇଥିଲେ । ଏହି ସମୟକୁ ସେ ତାଙ୍କ ଜୀବନର ଶ୍ରେଷ୍ଠ ଅଧ୍ୟାୟ ବୋଲି କହୁଥିଲେ ।

ସେ ଉତ୍କଳ ବିଶ୍ୱବିଦ୍ୟାଳୟର ବୋର୍ଡ ଅଫ୍ ଷ୍ଟଡ଼ିଜ୍ ଓ ସିନେଟ ସଭ୍ୟ ହିସାବରେ ଏବଂ ବିଶ୍ୱବିଦ୍ୟାଳୟର ଜ୍ଞାନକୋଷ ସଙ୍କଳନ ତଥା ଅନ୍ୟାନ୍ୟ ଅନୁଷ୍ଠାନର ସଦସ୍ୟ ହିସାବରେ ମଧ୍ୟ ବହୁ ଉଲ୍ଲେଖନୀୟ କାର୍ଯ୍ୟ କରିଥିବା ଜଣାଯାଏ ।

ପୁଣି 'ଆରଣ୍ଡି', 'ଶଙ୍ଖ' ଓ 'ମେହେର ପ୍ରଘାତ' ପରି ନାମ-କରା ସାହିତ୍ୟ ପତ୍ରିକାର ସମ୍ପାଦନା କରି ସେ ଅନେକ ଲେଖକଙ୍କୁ ଲୋକଲୋଚନକୁ ଆଣିବାରେ ସମର୍ଥ ହେଲେ ।

ଡକ୍ଟର ମାନସିଂହ କିଛିକାଳ ପାଇଁ କେନ୍ଦ୍ର ସାହିତ୍ୟ ଏକା-ଡେମୀର ସଭ୍ୟ ଥିଲେ ଏବଂ ୧୯୬୭ ମସିହାରେ ଭାରତ ସରକାରଙ୍କ ଦ୍ୱାରା ପଦ୍ମଶ୍ରୀ ଉପାଧିରେ ଭୂଷିତ ହୋଇଥିଲେ । ୧୯୬୮-୬୯ରେ ସେ ଗାନ୍ଧି-ଶତବାର୍ଷିକୀ କମିଟିର ସାହିତ୍ୟ ବିଭାଗର ଅଧ୍ୟକ୍ଷ ଥିଲେ ।

ଶେଷରେ ସେ 'ସ୍ୱରାଜ୍ୟ' ଦୈନିକ ସମ୍ବାଦପତ୍ରର ସମ୍ପାଦକ ପଦରେ ଅଧିଷ୍ଠିତ ଥିଲେ ଓ ଭୁବନେଶ୍ୱରରେ ଅବସ୍ଥାନ

କରୁଥିଲେ । ସ୍ୱାସ୍ଥ୍ୟହାନି କାରଣରୁ ସେ ଜୀବନର ଶେଷ କେଇବର୍ଷ ସମସ୍ତ କାର୍ଯ୍ୟରୁ ଅବ୍ୟାହତି ନେଇ ଘରେ ବସି ଲେଖାଲେଖି ଓ ପଢ଼ାପଢ଼ି କରୁଥିଲେ । ଏହି ସମୟରେ ସେ 'ଆଲୋକ' ମାଗାଜିନ୍‌ର ସମ୍ପାଦନା କରୁଥିଲେ ।

ଛାତ୍ରଜୀବନରୁ ଆରମ୍ଭ କରି ଶେଷ ନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ଡକ୍ଟର ମାନସିଂହ ସାରସ୍ୱତ ସେବାରେ ଆତ୍ମନିୟୋଗ କରିଥିଲେ ।

ଜୀବନରେ ସେ ବୌଦ୍ଧଧର୍ମର ଗୌତମଙ୍କ ବ୍ୟକ୍ତିତ୍ୱ ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ବୌଦ୍ଧଧର୍ମ ଗ୍ରହଣ କରିଥିଲେ ।

ଇଂରାଜୀ ଭାଷାରେ 'The Saga of the Land of Jagannath' ତାଙ୍କର ଅନ୍ୟତମ ଅବିନଶ୍ୱର ସୃଷ୍ଟି । କବି ନିଜେ ତାଙ୍କ କବିତାବଳୀରୁ ନିର୍ବାଚନ କରି ୭୪ଟି କବିତା ଇଂରାଜୀରେ ଅନୁବାଦ କରି 'Ripples of the Mahanadi' ନାମରେ ପ୍ରକାଶ କରିଥିଲେ ।

ତାଙ୍କ ଶେଷ ଜୀବନର ସର୍ବଶ୍ରେଷ୍ଠ ରଚନା ହେଲା 'ସରସ୍ୱତୀ ଫକୀରମୋହନ' ।

କବି ମାନସିଂହ କେବଳ ଜଣେ ବ୍ୟକ୍ତି ନ ଥିଲେ, ସେ ଥିଲେ ଏକ ବିଶିଷ୍ଟ ଅନୁଷ୍ଠାନ । ଶିକ୍ଷା, ସଂସ୍କୃତି ଓ ସାହିତ୍ୟର ସମ୍ମିଳିତ ଅନୁଷ୍ଠାନ ।

ଜୀବନର ନାନାପ୍ରକାର ଉତ୍‌ଥାନ ପତନ, ଜୟ-ପରାଜୟ ଭିତରେ ତାଙ୍କ ଜୀବନ ଗଢ଼ିଉଠିଥିଲା । ଓଡ଼ିଶା ଦେଶପାଇଁ, ଓଡ଼ିଆ ଜାତିପାଇଁ ତାଙ୍କ ଜୀବନ ଉତ୍ସର୍ଗୀକୃତ ଥିଲା । ଏଥିପାଇଁ ଜୀବନର ସବୁକିଛି ଦାନ କରିଥିଲେ ମଧ୍ୟ, ଦେଶ ଓ ଜାତି ତାଙ୍କୁ କିଛିହେଲେ ପ୍ରତିଦାନ କରି ନ ଥିଲା ।

ସୁଗୃହିଣୀ ଓ ସୁଲେଖିକା ପତ୍ନୀ ହେମଲତା ମାନସିଂହ ତାଙ୍କପାଇଁ ଉତ୍ସାହ ଓ ପ୍ରେରଣାର ଗନ୍ତାଘର ଥିଲେ ।

ତାଙ୍କର ତିନି ପୁତ୍ର ଓ ଦୁଇ କନ୍ୟା । ପୁତ୍ରମାନେ ସାମାଜିକ କ୍ଷେତ୍ରରେ ପ୍ରତିଷ୍ଠାଲାଭ କରିଅଛନ୍ତି ।

ଶେଷାବସ୍ଥାରେ ସେ ପତ୍ନୀ ମାନସିଂହ ଓ କନ୍ୟା ସଂଘମିତ୍ରାଙ୍କର ସେବାଶୁଶ୍ରୂଷା ଲାଭ କରିଥିଲେ ।

୧୯୭୩ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସ ଏଗାର ତାରିଖ ସନ୍ଧ୍ୟାରେ ସେ ଇହଲୀଳା ସାଙ୍ଗ କଲେ ।

---

## ବ୍ୟକ୍ତିଗତ ସଂସାର :

ମାନସିଂହ ଭୂମିଷ୍ଠ ହେବାର ମାତ୍ର ଚାରି ବର୍ଷ ପରେ ପିତାମାତାଙ୍କୁ ହରାଇ ବସିଲେ ।

ତାଙ୍କୁ ହୋପାଜତ କରି ପାଠଶାଳାକୁ ପଠାଇବାର ଦାୟିତ୍ୱ ପଡ଼ିଥିଲା ତାଙ୍କର ସାଆନ୍ତବାପାଙ୍କ ଉପରେ ।

ମାନସିଂହଙ୍କ ପରିବାର ପାରିକୁଦ ଅଞ୍ଚଳରେ ସମ୍ଭ୍ରାନ୍ତ ପରିବାରରୂପେ ବିବେଚିତ ହେଉଥିଲା । ତାଙ୍କ ପୂର୍ବପୁରୁଷମାନେ ସାତପୁରୁଷ ଧରି ପାରିକୁଦ ରାଜପରିବାର ସଙ୍ଗରେ ସମ୍ପୃକ୍ତ ଥିଲେ । ସେମାନେ ରାଜଦରବାରରେ ଉଚ୍ଚପଦ ଅଧିକାର କରି ଧନସମ୍ପତ୍ତି ଭୋଗ କରି ଆସୁଥିଲେ ।

ସାଆନ୍ତବାପା, ଯିଏ ଏହି ପିତୃମାତୃହରା ମାନସିଂହଙ୍କୁ ବଢ଼ାଇ ବିଦ୍ୟାଳୟକୁ ପଠାଇବାରେ ସକଳପ୍ରକାର ପ୍ରଯତ୍ନ କରିଥିଲେ, ସେ

ମାତ୍ର ମାଇନର ପର୍ଯ୍ୟନ୍ତ ପଢ଼ିଥିଲେ । କିନ୍ତୁ ଏହି ସ୍ୱଳ୍ପ ଶିକ୍ଷା ସତ୍ତ୍ୱେ ସେ ପାରିକୁଦ ରାଜ୍ୟର ଦେବାନ ପଦବୀରେ ଅଧିଷ୍ଠିତ ଥିଲେ ।

ମାନସିଂହ ପାଠପଢ଼ା ଶେଷ କରି ଚାକିରୀ କଲାବେଳକୁ ଏହି ସ୍ନେହଶୀଳ ମାଆନ୍ତବାପା ଆଉ ଧରାଧାମରେ ନ ଥିଲେ ।

ଏହି ମାଆନ୍ତବାପାଙ୍କ ନାମ ଶ୍ରୀ ଅଗାଧୁ ନାୟକ । ୧୯୧୭ ମସିହାରେ ପୁରୀ ସହରରେ ଉତ୍କଳ ସମ୍ମିଳନୀର ଆୟୋଜନ ହୋଇଥିଲା । ସେହି ସମ୍ମିଳନୀରେ ସମଗ୍ର ଓଡ଼ିଆଭାଷୀ ଅଞ୍ଚଳରୁ ପ୍ରତି-ନିଧିମାନେ ଯୋଗ ଦେଇଥିଲେ । ପାରିକୁଦ ରାଜ୍ୟର ପ୍ରତିନିଧି ଭାବରେ ପାରିକୁଦ ରାଜ୍ୟର ରାଜା ଦେବାନ ବାହାଦୂର ଶ୍ରୀ ଅଗାଧୁ ନାୟକଙ୍କୁ ଉକ୍ତ ସମ୍ମିଳନୀକୁ ପଠାଇଥିଲେ ।

ଶ୍ରୀ ଅଗାଧୁ ନାୟକ ବାଳକ ମାନସିଂହଙ୍କର ସାହିତ୍ୟ ପ୍ରତି ସାତିଶୟ ଆଗ୍ରହ ଦେଖି ନିଜ ପୁଅକୁ ବି ସଙ୍ଗରେ ନ ନେଇ ବାଳକ ମାୟାଧରଙ୍କୁ ନେଇ ପୁରୀ ଯାଇଥିଲେ ।

ପୁରୀର ଉତ୍କଳ ସମ୍ମିଳନୀ ଦେଖିବା ପରେ ମାନସିଂହଙ୍କ ମନ ଭିତରେ ଅଭୂତପୂର୍ବ ଉନ୍ମାଦନା ଖେଳିଯାଇଥିଲା । ଏହାକୁ ଭାଷା ଦେଇ କବି ମାନସିଂହ କହନ୍ତି, "ଏଇ ସୁଯୋଗ ମତେ ଯେପରି ଏକ ନୂତନ ସଂସାରରେ ନେଇ ପହଞ୍ଚେଇଦେଲା । କାରଣ ସେଥର ସେହିଠାରେହିଁ ଓଡ଼ିଶାରେ ସେକାଳର ସକଳ ବିଖ୍ୟାତ ଲୋକଙ୍କୁ ମୁଁ ଏକାବେଳକେ ପ୍ରଥମ କରି ଏକତ୍ର ଦେଖିବାକୁ ପାଇଲି । ସେଇଠି ପ୍ରଥମେ ମଧୁବାବୁଙ୍କୁ ଦେଖିଲି, ଦେଖିଲି ଗୋପବନ୍ଧୁଙ୍କୁ, ଦେଖିଲି ସତ୍ୟବାଦୀର ବରେଣ୍ୟ ଶିକ୍ଷକବୃନ୍ଦଙ୍କୁ—ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ ଓ କୃପାସିନ୍ଧୁଙ୍କୁ ।

୧୧।୧୨ ବର୍ଷ ବୟସରେ ବାଳକର ଅନ୍ତର ତଳେ ହୁଏତ ସ୍ୱପ୍ନ ଅଙ୍କୁର ଉଠିଥିବ, ଏମାନଙ୍କ ପରି ଜଣେ ହେବାକୁ । ଖୋର୍ଦ୍ଧା ସ୍କୁଲର

ଗ୍ରୁହ ଯେ ସ୍କୁଲ ଶିକ୍ଷକ ହେବାର ଅଭିଳାଷ ପୋଷଣ କରିଥିଲି, ତାହା ଟ୍ରେନିଂ ସାର୍ଟିଫିକେଟସର୍ବସ୍ୱ ସାଧାରଣ ଟିଚର୍ ନୁହେଁ, ତାର ଆଦର୍ଶ ଥିଲା ସତ୍ୟବାଦୀର ଶିକ୍ଷକ; ଜୀ'ଙ୍କସ୍ୱ ଜୀବନର ପୂଣ୍ୟ-ସ୍ରୋତରେ ପୂର୍ଣ୍ଣ ଅବଗାହନ ଓ ସନ୍ତରଣର ଆଶା ।"

ଏହାପରେ ମାନସିଂହ କଲେଜରେ ପାଠ ପଢ଼ିଲା ବେଳେ, ପଣ୍ଡିତ ଗୋଦାବରୀଶ ତାଙ୍କୁ ଚିଠି ଲେଖି ବାଣପୁର ସ୍କୁଲରେ ଯୋଗଦେବାକୁ କହିଥିଲେ । ପୁଣି ନିଜେ ତାଙ୍କର ସେକ୍ରେଟାରୀ ଶ୍ରୀ ସୁଦର୍ଶନ ପାଣିଗ୍ରାହୀଙ୍କ ସଙ୍ଗରେ ମାନସିଂହଙ୍କ ସାଙ୍ଗରେ ସାକ୍ଷାତ କରି ଏଇ ପ୍ରସଙ୍ଗରେ ଆଲୋଚନା କରିଥିଲେ । ଏହାର ଫଳରେ ଡ୍. ଇଡ୍. ପାଶ୍ କରିବା ପରେ ଗୋଦାବରୀଶଙ୍କ ପ୍ରତିଷ୍ଠିତ ବାଣପୁର ହାଇସ୍କୁଲରେ ମାନସିଂହ ସହକାରୀ ଶିକ୍ଷକ ରୂପେ ଯୋଗ ଦେଇଥିଲେ ।

ନିଜ ଜୀବନର ପାଠପଢ଼ା ବିଷୟରେ ମାନସିଂହ କହନ୍ତି, "ମୁଁ ମାଟ୍ରିକ୍ୟୁଲେଶନ୍ ପରୀକ୍ଷାଟା ବି ଟପି ପାରିବି, ଏ ଭରସା ମୋର ଆଦୌ ନ ଥିଲା ।" କାରଣ ଅଙ୍କ ବିଷୟଟା ତାଙ୍କ ହାତରେ ଜମା ହେଉ ନ ଥିଲା । ଏଥିପାଇଁ ସେ ଖୁବ୍ ବିବ୍ରତ ଥିଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା, ସେ ସେହି ମାଟ୍ରିକ୍ ପରୀକ୍ଷାରେ ଫାଷ୍ଟ ଡିଭିଜନ୍‌ରେ ପାଶ୍ କରି ଡିଭିଜନାଲ୍ ସ୍କଲର୍‌ସିପ୍ ପାଇଲେ । ଏହାର ଫଳରେ ତାଙ୍କର କଟକ କଲେଜରେ ପଢ଼ିବା ସମ୍ଭବ ହେଲା ।

ସେ ମାସକୁ ପଚିଶ ଟଙ୍କା କରି ବୃତ୍ତିଲାଭ କରୁଥିଲେ ଓ ଏଇ ଟଙ୍କାରେ ପାଠ ପଢ଼ୁଥିଲେ ।

ଏହି ବୃତ୍ତି ଟଙ୍କାକୁ ନେଇ ତାଙ୍କ ଗାଁ 'ନନ୍ଦଳା'ରେ ଯେଉଁ ଆଲୋଚନା ଚାଲିଥିଲା, ସେ ବିଷୟରେ ମାନସିଂହ ଏକ କୌତୁ-

ହରେକୋଣ୍ଡାଙ୍କ ଚଠ ଦେଇ କହନ୍ତି, "ହେଲେ ସନ୍ଧ୍ୟାରେ ଆମ ପୁରୁଣା ଗାଁରେ (୧୯୪୨ ବନ୍ୟାରେ ଏହି ଗ୍ରାମ ବିଧ୍ୱସ୍ତ ହୋଇଯାଇଛି।) ଆମ ଘରସାମ୍ନା ଗୁହାଳ ଉପରେ ମୁଁ ବସିଛି। ଗ୍ରାମର ଅନେକ ଲୋକ ବି ଅଛନ୍ତି। କଥା ପଡ଼ୁ ପଡ଼ୁ ଲୋକେ ମୋତେ ପଚାରିଲେ, ମୁଁ କେତେ ଟଙ୍କା ବୃତ୍ତି ପାଉଛି। ମୁଁ ଉତ୍ତର ଦେଲି—ପଚାଶ୍ ଟଙ୍କା। (ସେକାଳର ଆଇ. ଏ. ଶ୍ରେଣୀର ବୃତ୍ତି)। ଗ୍ରାମବାସୀ ଚାଙ୍କୁଡ଼ି ହୋଇଗଲେ। ତାଙ୍କ ଭିତରୁ ଜଣେ ପ୍ରଗଲ୍‌ଭ ଲୋକ କହିଲା— "କଣ କରୁଛ ଏତେ ଟଙ୍କା ? ଘରକୁ ଟଙ୍କା ପଠାଉନ କାହିଁକି ? ବଡ଼ ଝଙ୍ଗ ତ ଖାଇବା ? କେତେ ଏମିତି ଖାଇବ ? ଦିନକୁ ଟିରଣା କରି ଖାଇଲେ ତ ମାସକୁ ଟ. ୭୮ ପଡ଼ିଲା । ବାକି ଟଙ୍କା କଣ କରୁଛ ? ଉଡ଼େଇ ଦେଉଛ ?"

ଏହାପରେ କଲେଜ ପଢ଼ା ଶେଷ ହେଲା। ଭି. ଇଡି. ଛଡ଼ି ସେ ବାଣପୁର ଓ ନମାପଡ଼ାରେ ଚାକିରି କଲେ ଓ ଅବସ୍ଥା ସଙ୍ଗେ ନିଜକୁ ଖାପ ଖୁଆଇ ନ ପାରି ମାତ୍ର ତିରିଶ ଟଙ୍କା ଅଧିକ ଦରମା ଲୋଭରେ ସେ ଭବାନୀପାଟଣା ହାଇସ୍କୁଲରେ ସହକାରୀ ପ୍ରଧାନଶିକ୍ଷକ ପଦ ପାଇଁ ଚାଲିଗଲେ। ଉକ୍ତର ମାନସିଂହ ଚାକିରି କଲାବେଳକୁ ତାଙ୍କ ସ୍ୱେଚ୍ଛାଶୀଳ ସାଆନ୍ତବାଦ ଆଉ ନ ଥିଲେ। ଘରେ ମନୋମାଳିନ୍ୟ ଦେଖା ଦେଇଥିଲା। ବଡ଼େଇମାନେ ତାଙ୍କ ବିରୁଦ୍ଧରେ ଅଭିଯୋଗ ଆଣୁଥିଲେ ଓ ଝଗଡ଼ା ରଚନା କରୁଥିଲେ।

ନାନାପ୍ରକାର ପ୍ରତିବନ୍ଧକ ସତ୍ତ୍ୱେ ସେ କୃଷିବିଜ୍ଞାନୀ ଶ୍ରୀ ଦୁର୍ଗାମାଧବଙ୍କ ସାନଭଉଣୀ ହେମଲତାଙ୍କୁ ବିବାହ କରିଥିଲେ। ବାଣପୁର ଓ ନମାପଡ଼ାରେ ସେ ସସ୍ତ୍ରୀକ ଜୀବନଯାପନ କରୁଥିଲେ।

ପତ୍ନୀ ହେମଲତା ସୁଗୃହିଣୀ ଓ ସୁଲେଖିକା ଭାବରେ କବି-ମାନସିଂହଙ୍କ ପ୍ରେରଣାର ଉତ୍ସ ଥିଲେ। ସେ କେବଳ ପତ୍ନୀ ଭାବରେ

ନୁହେଁ, ସହକର୍ମୀ ଓ ସହଧର୍ମୀ ଭାବରେ କବିଙ୍କ ଜୀବନକୁ ଉପଭୋଗ କରିଥିଲେ ।

ବାଣପୁର ହାଇସ୍କୁଲରେ ଶିକ୍ଷକତା କଲାବେଳେ ହେମଲତା ବାଣପୁର ନିକଟବର୍ତ୍ତୀ ଅଚ୍ୟୁତରାଜପୁର ଶାସନରେ, ସକଳ କୁସଂସ୍କାର ଓ ଅନ୍ଧ ବ୍ରାହ୍ମଣାଙ୍କୁ ପାଦରେ ଦଳିଦେଇ ଶିକ୍ଷୟିତ୍ରୀ ଭାବରେ ଶାସନର ବାଳିକାମାନଙ୍କୁ ପାଠ ପଢ଼ାଉଥିଲେ । ଏଥିପାଇଁ ପଣ୍ଡିତମାନଙ୍କ କମ୍ କଥା ଶୁଣିବାକୁ ପଡ଼ି ନାହିଁ । କିନ୍ତୁ ପଣ୍ଡିତ ଗୋଦାବରୀଶ ଏଥିପାଇଁ ନିଜେ ମାନସିଂହଙ୍କ ବସାଘରକୁ ଆସି ହେମଲତାଙ୍କ ସମାଜସେବା ମନୋବୃତ୍ତି ପାଇଁ ଅଜସ୍ର ପ୍ରଶଂସା କରିଥିଲେ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ପଣ୍ଡିତ ମିଶ୍ର ଅଚ୍ୟୁତରାଜପୁର ଶାସନରେ ଜନ୍ମଗ୍ରହଣ କରିଥିଲେ ।

ବାଣପୁର, ନିମାପଡ଼ା ସ୍କୁଲରେ ଚାକିରି କରିବା ପରେ ସେ ଭବାନୀପାଟଣା ସ୍କୁଲରେ ନବେ ଟଙ୍କା ଦରମାରେ ମୁଖ୍ୟଶିକ୍ଷକ ହୋଇଥିଲେ । ସେଇଠୁ ସେ ଏକ ଜାପାନୀ ଜାହାଜରେ ଚଢ଼ି, ହାତରେ ମାତ୍ର ଟ ୨୫୯୯ ନେଇ ଉଚ୍ଚ ଶିକ୍ଷାପାଇଁ ବିଲାତ ଯାତ୍ରା କରିଥିଲେ । ବିଲାତରେ ଷ୍ଟୋଭରେ ରନ୍ଧି, ନିଜର ଏକମାତ୍ର ପୋଷାକକୁ ଧୋଇ-ଶୁଖାଇ-ପିନ୍ଧି ଯେ କୌଣସି ମତେ କାଳକଟାଇ ଇଂରାଜୀ ସାହିତ୍ୟରେ ପିଏଚ୍. ଡି. ଡିଗ୍ରୀ ନେଇ ଫେରିଆସିଲେ ।

ଏହି ବିଲାତଯାତ୍ରା କଥା ସେ ମୃତ୍ୟୁର ମାତ୍ର ଦେଢ଼ମାସ ପୂର୍ବରୁ ଅର୍ଥାତ୍ ୨୩।୮।୭୩ରେ ଅଧ୍ୟାପକ ରାଜକିଶୋର ରାୟଙ୍କୁ ଚିଠି ଲେଖି ଜଣାଇଛନ୍ତି, "ମୁଁ ଭବାନୀପାଟଣାରେ ମାତ୍ର କଷ୍ଟେ ଥିଲି । × × ମତେ କଳାହାଣ୍ଡି ମହାରାଜା ପୃଷ୍ଠପୋଷକତା

କାହିଁକି କରି ଯାଆନ୍ତେ ? କଳାହାଣ୍ଡିର କୌଣସି ଜମିଦାର ବହୁ ଟଙ୍କା ରଖିଛନ୍ତି ଶୁଣି ତାଙ୍କୁ ପରେ ସୁଝି ଦେବାର ପ୍ରତିଶ୍ରୁତି ଦେଇ କିଛି ସାହାଯ୍ୟ ମାଗିଥିଲି । ସେ ହଁ କରିଥିଲେ; କିନ୍ତୁ ଦେଲେ ନାହିଁ । ମୁଁ ମୋର ସାମାନ୍ୟ ସଂଚୟ ଓ ମୋର ସ୍ତ୍ରୀଙ୍କ ସ୍ୱାର୍ଥତ୍ୟାଗ, କେବଳ ଏତିକି ପୁଞ୍ଜି ନେଇ ସମୁଦ୍ରକୁ ଡେଇଁଥିଲି ।

କାହାକୁ ଭିକ୍ଷା କରିନି, ଯଦିଓ ଭବାନୀପାଟଣାର ମହାରାଜା, ଦେଓ୍ୱାନ, ଶୁଦ୍ଧ ସମାଜ ଓ ଜନତା ସମସ୍ତେ ମୋ ପ୍ରତି ସୁପ୍ରସନ୍ନ ଥିଲେ । ମୁଁ ସ୍ଥାନ ପ୍ରତି କୃତଜ୍ଞ, କାରଣ ମୋର ପ୍ରଥମ ସନ୍ତାନ ସେଇଠି ଭୂମିଷ୍ଠ ହୋଇଥିଲେ । × ×”

ଏହି ବଡ଼ପୁଅର ନାଁ ଲଲାଟେନ୍ଦୁ ମାନସିଂହ ।

ମାନସିଂହଙ୍କର ତିନି ପୁଅ ଓ ଦୁଇ କନ୍ୟା ।

ମୃତ୍ୟୁବେଳକୁ ତାଙ୍କର ବଡ଼ପୁଅ ବିଶିଷ୍ଟ ବୈଜ୍ଞାନିକ ଡକ୍ଟର ଲଲାଟେନ୍ଦୁ ମାନସିଂହ ଆମେରିକାର ‘ନାସା’ ଅନୁଷ୍ଠାନରେ ଭୂ ରସାୟନ ବିଭାଗରେ ଅବସ୍ଥାପିତ ହୋଇ ସେହି ଆମେରିକାରେ ହିଁ ଥିଲେ । ଅନ୍ୟ ଦୁଇପୁଅ ଆଇ.ଏ. ଏସ୍. ପାଇ ଜଣେ କାବୁଲସ୍ଥ ଭାରତୀୟ ଦୂତାବାସରେ ଓ କନିଷ୍ଠ ପୁତ୍ର ଗୁଜୁରାଟରେ ଥିଲେ ।

ଜ୍ୟେଷ୍ଠା କନ୍ୟା ଶ୍ରୀମତୀ ନିବେଦିତା ଆକାଶବାଣୀର ଜଣେ ପଦସ୍ଥ ଅଫିସରଙ୍କୁ ବିବାହ କରିଛନ୍ତି । କନିଷ୍ଠା କନ୍ୟା ସଂଘମିତ୍ରା ହିଁ ଖାନ୍‌ନଗର ଶ୍ମଶାନରେ ତାଙ୍କ ଚିତାରେ ଅଗ୍ନି-ସଂଯୋଗ କରିଥିଲେ ।

ତାଙ୍କର ଆକସ୍ମିକ ବିୟୋଗ ଫଳରେ ଓଡ଼ିଶା ଦେଶ ଜାତି ପକ୍ଷରେ ଯେ କେତେ କ୍ଷତି ହେଲା, ତାକୁ ସ୍ମରଣ କରି ସାହିତ୍ୟିକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର କହନ୍ତି, “ସେହି ନିରାଡ଼ମ୍ବର, ନୀରବ

କୋଳାହଳହୀନ, ନିଷ୍ଠଳ କୃତ୍ୟହିଁ ତାଙ୍କର ଯଥାର୍ଥ ସମ୍ମାନ । ଯିଏ ସମ୍ମାନ ପଛରେ କେବେ ଗୋଡ଼ାଇ ନାହିଁ ଜୀବନରେ, ତାକୁ ଆଡ଼ମ୍ବର ଭିତରେ, କୋଳାହଳ ଭିତରେ ସମ୍ମାନ ଦେବ କିଏ ? ସେ ତ ସମ୍ମାନକୁ ଗୋଇଠାମାରି ଆଡ଼େଇ ଦେଇଛନ୍ତି ବାଟ ଉପରୁ, ଆତ୍ମ-ଅଭିମାନରେ ନୁହେଁ, ଲେଖକର ଅଭିମାନରେ । ଓଡ଼ିଶାର ଜଣେ ଲେଖକ ହିସାବରେ ସମ୍ମାନର ଆଶା ରଖି ନ ଥିଲେ ସତ; କିନ୍ତୁ ଲେଖକ ହେବାର ଅଭିମାନକୁ ସେ କେବେ ଆହତ ହେବାକୁ ଦେଇ ନାହାନ୍ତି । ସେଇଥିପାଇଁ ସେ ଥିଲେ ମାନସିଂହ । ସମ୍ମାନ ତାଙ୍କର ଜନ୍ମଗତ ଅଧିକାର । × × ×

ସମସ୍ତଙ୍କୁ ଆପଣାର କରିବାର ସ୍ୱଭାବ ଯେଣୁ ସେ ପରି-ଶେଷରେ, ମରଣକୁ ଅତି ନୀରବରେ ଅତି ଗୋପନରେ ଏକାନ୍ତ ଆପଣାର କରି ଜୀବନ ଉତ୍ସର୍ଗ କରି ଦେଇଗଲେ ।"

ମାନସିଂହ ଥିଲେ ଏକାଧାରରେ ମେଧାବୀ ଓ କଷ୍ଟସହିଷ୍ଣୁ ଛାତ୍ର, ଦକ୍ଷ ଶିକ୍ଷକ, ରସିକ କବି, ପ୍ରବୀଣ ପ୍ରାବନ୍ଧିକ, ପ୍ରସିଦ୍ଧ ସାହିତ୍ୟିକ । ସେ ଥିଲେ ଯେପରି ଶୃଙ୍ଖଳାବାଦୀ, ସେହିପରି କଳ୍ପନା-ପ୍ରବଣ । ଦକ୍ଷ ଗୃହସ୍ଥ ଭାବରେ ସେ ନିଜର ବ୍ୟକ୍ତିଗତ ସଂସାରକୁ ଅତି ସୁନ୍ଦର ଭାବରେ ଗଢ଼ିପାରିଥିଲେ । ନିଷ୍ଠାପର ବୌଦ୍ଧଧର୍ମୀ ଭାବରେ ସତ୍ୟ ଓ ଅହିଂସା ମାର୍ଗରେ ଜୀବନଯାପନ କରୁଥିଲେ ।

ମୃତ୍ୟୁଶଯ୍ୟାରେ ଶୋଇ ମଧ୍ୟ ସେ ଶେଷ ପର୍ଯ୍ୟନ୍ତ ପଢ଼ାପଢ଼ି ଓ ଲେଖାଲେଖିରେ ବ୍ୟସ୍ତ ଥିଲେ । ଶେଷ ଅବସ୍ଥାରେ ସେ ଓଡ଼ିଆ ମାସିକ 'ଆଲୋକ'ର ସମ୍ପାଦନା କରୁଥିଲେ ।

ନିର୍ଭୀକ, ସ୍ପଷ୍ଟବାଦୀ ଓ ସତ୍ୟବାଦୀ ହିସାବରେ ଓଡ଼ିଶାର ଶିକ୍ଷିତ ଲୋକମାନେ ତାଙ୍କୁ ଭକ୍ତି କରୁଥିଲେ । ଯାହା ଭୁଲ

ବୋଲି ବୁଝୁଥିଲେ, ତାକୁ ମୁହେଁ ମୁହେଁ ବା ଲେଖମା ସାହାଯ୍ୟରେ ନିନ୍ଦା କରୁଥିଲେ । ଏଥିପାଇଁ ସେ 'ଅଚତୁର' ବୋଲି ନିନ୍ଦିତ ହେଉଥିଲେ ମଧ୍ୟ ସେଥିପ୍ରତି ଭ୍ରୂକ୍ଷେପ କରୁ ନଥିଲେ ।

ସେ ସର୍ବଦା ସଂସ୍କୃତିସଚେତନ ଥିଲେ ।

କବି ଓ କଳାକାରମାନଙ୍କ ପ୍ରତି ତାଙ୍କ ହୃଦୟରେ ସ୍ନେହ, ଶ୍ରଦ୍ଧା ଓ ସମ୍ମାନ ଭରିଥିଲା । ସେ ପାଉଥିବା ଶହ ଶହ ଚିଠିର ଉତ୍ତର ଦେବାପାଇଁ ସମୟ ନିର୍ଦ୍ଧାରଣ କରିଥିଲେ । କବି, କଳାକାରମାନଙ୍କୁ ଦେଖିଲେ ଗଦ୍‌ଗଦ ହୋଇ ଉଠୁଥିଲେ । ନୂତନ ଲେଖକ ଦେଖା କରିବାକୁ ଆସିଲେ ପାଖରେ ବସାଇ, ସହାନୁଭୂତି ଦେଖାଇ ନାନାପ୍ରକାର ଉପଦେଶ ଦେଉଥିଲେ ।

ମାୟାଧର ମାନସିଂହ ଥିଲେ ଜଣେ ଖାଣ୍ଟି ଓଡ଼ିଆ । ଓଡ଼ିଶା ଦେଶ ଓ ଓଡ଼ିଆ ଜାତି ପାଇଁ ତାଙ୍କ ପ୍ରାଣରେ ଅନେକ ଦରଦ ଥିଲା । ଯେଉଁଠି ଓଡ଼ିଆ ଭାଷାର ଅବମାନନା ଦେଖୁଥିଲେ, ସେ ତାର ବିରୋଧ କରୁଥିଲେ ।

ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ସେ ଅହରହ ଉଦ୍ୟମ କରୁଥିଲେ । ଓଡ଼ିଶା ସାହିତ୍ୟ ଏକାଡେ଼ମୀଠାରୁ ଆରମ୍ଭ କରି ସ୍କୁଲ, କଲେଜ, ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ସବୁ ସ୍ତରରେ କାର୍ଯ୍ୟ କରୁଥିଲେ । ଏମିତି ଗୋଟିଏ ଦିନ କଟିଯାଇନି, ଯେଉଁଦିନ ସେ ଏ ବିଷୟରେ ପଢ଼ିବା-ଲେଖିବା ବା ଆଲୋଚନା କରିବାକୁ ସମୟ ଦେଇ ନାହାନ୍ତି ।

ମାନସିଂହଙ୍କ ବିୟୋଗରେ ଏ ଦେଶର ଓ ଜାତିର ଯେଉଁ ଅପୂରଣୀୟ କ୍ଷତି ହେଲା, ତାହା ପୂରଣ ହୋଇପାରିବ କି ନାହିଁ ସନ୍ଦେହ ।

ଏ ସଂପର୍କରେ କବି ସଚ୍ଚି ରାଉତରାୟ କହନ୍ତି, "ଜବାହର-ଲାଲଙ୍କୁ ରବୀନ୍ଦ୍ରନାଥ 'ଋତୁରାଜ' ବୋଲି କହିଥିଲେ । ମାନସିଂହଙ୍କୁ ଆମେ ଓଡ଼ିଆ ସାହିତ୍ୟର 'ଧାରାଶ୍ରାବଣ' ବୋଲି ଅଭିହିତ କରିପାରୁଁ । କାରଣ ତାଙ୍କର ଉଚ୍ଛ୍ୱାସ ଓ ପ୍ରାଚୁର୍ଯ୍ୟ ଏ ସାହିତ୍ୟକୁ ବହୁ ଦାରିଦ୍ର୍ୟ ଓ ସଂକୀର୍ଣ୍ଣତା ହାତରୁ ରକ୍ଷା କରିଛି ।"



## ଅନେକ ଆଲୋଡ଼ନର ପ୍ରତୀକ : ମାନସିଂହ

### କବି ମାନସିଂହ :

କଲେଜ ଜୀବନର ଆରମ୍ଭ ବେଳକୁ ମାନସିଂହ କବି ରୂପରେ ପରିଚିତ ହୋଇଯାଇଥିଲେ । ଏ ପ୍ରକାର ସୌଭାଗ୍ୟ ଖୁବ୍ ଅଳ୍ପ କେତେଜଣ କବିଙ୍କ କପାଳରେ ଜୁଟିଛି । କିନ୍ତୁ ତାଙ୍କ କବିତା ପ୍ରଚଳିତ କବିତା-ପରଂପରାରେ ବ୍ୟତିକ୍ରମ ସୃଷ୍ଟି କରିଥିବାରୁ ତାହା ସମଗ୍ର ଓଡ଼ିଶାରେ ଆଲୋଡ଼ନ ଆଣିଦେଲା । କେତେଜଣ ଅସହିଷ୍ଣୁ ବ୍ୟକ୍ତି ତାଙ୍କ କବିତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି, ତାଙ୍କୁ ନିଷିଦ୍ଧ କବି ଭାବରେ ଚିହ୍ନଣ କଲେ । କିନ୍ତୁ ତାଙ୍କ କବିତାର ଭାଷା, ଭାବ, ଛନ୍ଦ ପାଠକମହଲରେ ଖୁବ୍ ଆଦୃତ ହେଲା । ପରବର୍ତ୍ତୀ କାଳରେ ବହୁ ଲେଖକ-ଲେଖିକା 'ମାପୁଧର୍ମ' ଛନ୍ଦରେ କବିତା ଲେଖିବା ଆରମ୍ଭ କରିଦେଲେ । ଏବେ ମଧ୍ୟ ମାନସିଂହଙ୍କ 'ଧୂପ', 'ହେମପୁଷ୍ପ', 'ହେମଶସ୍ୟ' ପ୍ରଭୃତି କବିତା ସଂକଳନ ଓଡ଼ିଆ

ସାହିତ୍ୟର ଅନ୍ୟତମ ପ୍ରେମ-କବିତାରୂପେ ବିବେଚିତ ହୁଏ ଓ ବହୁଳ ଭାବରେ ପଠିତ ହୋଇଥାଏ ।

ତେବେ ଓଡ଼ିଆ ସାହିତ୍ୟର ପ୍ରସିଦ୍ଧ ପ୍ରେମିକ-କବି ଯେ ଜୀବନରେ ବୌଦ୍ଧଧର୍ମ ଗ୍ରହଣ କରି, ଶୁଦ୍ଧପୂତ ଧାର୍ମିକ ଜୀବନକୁ ଆଦରି ନେଇଥିଲେ, ଏହା ଜାଣି ଆଶ୍ଚର୍ଯ୍ୟ ହେବାକୁ ପଡ଼ିଥାଏ ।

## ମୌଳିକ ଶିକ୍ଷା ଯୋଜନା :

ମାନସିଂହ ସ୍କୁଲ ଇନ୍‌ସପେକ୍ଟର ଥିଲାବେଳେ ସରକାର ରାଜ୍ୟରେ ମୌଳିକ ଶିକ୍ଷା ପ୍ରଚଳନ କରିଥିଲେ । ଏ ଯୋଜନାକୁ ସେ ଆନ୍ତରିକ ଭାବରେ ଗ୍ରହଣ କରିବା ଦୂରେ ଥାଉ, ଏହା ବିରୁଦ୍ଧରେ ଦୃଢ଼ ଯୁକ୍ତି ପରିବେଷଣ କରି ପତ୍ର-ପତ୍ରିକାରେ ତୀବ୍ର ବିରୋଧ କରିଥିଲେ । 'ପ୍ରଜାତନ୍ତ୍ର' ସମ୍ବାଦପତ୍ରରେ ମୌଳିକ ଶିକ୍ଷା-ବିରୋଧୀ ପ୍ରବନ୍ଧ ପ୍ରକାଶ ପାଇଲା । ଅଥଚ ଶିକ୍ଷାବିଭାଗର ଇନ୍‌ସ୍‌ପେକ୍ଟର ଭାବରେ, ଏହି ମୌଳିକ ଶିକ୍ଷାପଦ୍ଧତିର ପ୍ରଚଳନ ଓ ପ୍ରସାର କରିବା ତାଙ୍କର କର୍ତ୍ତବ୍ୟ ଥିଲା । ଏ ସଂପର୍କରେ ସେ କହନ୍ତି, "ଉତ୍ତର-ଓଡ଼ିଶାର ଇନ୍‌ସ୍‌ପେକ୍ଟର ଥିଲାବେଳେ ବେସିକ୍ ସିଷ୍ଟମ୍ ବିଷୟରେ ବିଭିନ୍ନ ଦୃଷ୍ଟିକୋଣରୁ ପତ୍ର-ପତ୍ରିକାରେ ଆଲୋଚନା କରିବାରୁ, ଦଣ୍ଡସ୍ୱରୂପ, ଇନ୍‌ସ୍‌ପେକ୍ଟର ପଦରୁ ତଡ଼ା ଖାଇ ପ୍ରିନ୍‌ସପାଲ ରୂପେ ପଠା ହେଲି ।

## ପାଠ୍ୟପୁସ୍ତକ :

ଭକ୍ତକବି ମଧୁସୂଦନ ରାଓଙ୍କ ପାଠ୍ୟପୁସ୍ତକ ପରିବର୍ତ୍ତନ ପାଇଁ ଶିକ୍ଷିତ ମହଲରେ କଳ୍ପନାଜଳ୍ପନା ଚାଲିଥିଲାବେଳେ ସେ ମଧୁବାବୁଙ୍କ ପାଠ୍ୟପୁସ୍ତକ ପ୍ରଚଳନର ସପକ୍ଷରେ ଥିଲେ ।

ଏ ସଂପର୍କରେ ସେ ଶିକ୍ଷାଙ୍ଗନ୍‌ର ଗାଥାରେ କହନ୍ତି, "ମଧୁବ୍ରତଙ୍କ ମର୍ଯ୍ୟାଦାବନ୍ତ ସାହିତ୍ୟ-ପୁସ୍ତକ ସବୁ କୂଟଚକ୍ର ଫଳରେ ସ୍କୁଲମାନଙ୍କରୁ ଉଠାଇ ଦେଇ, ନାନା ଇତରଲୋକଙ୍କର ତୃତୀୟ ଶ୍ରେଣୀର କେତାପ, 'ସାହିତ୍ୟ' ନାମରେ ସେତେବେଳକୁ ଓଡ଼ିଶାର ସ୍କୁଲମାନଙ୍କରେ ପଶି ସାରିଲେଣି । ଅର୍ଥଲୋଭରେ ହଠାତ୍ କବି-ଲେଖକ ପାଲଟିଯାଇଥିବା ଏହି ଗଣ୍ଡା ଗଣ୍ଡା ଇତରମାନଙ୍କ ଦୟାରୁ ଆମ ସ୍କୁଲମାନଙ୍କରୁ 'ସାହିତ୍ୟ' ତ ଉଭେଇଗଲାଣି, ଭାଷା ବି ଗଲାଣି । ଏବେ ସ୍ପଷ୍ଟ, ବିଶୁଦ୍ଧ ଭାବରେ ଓଡ଼ିଆର ଉଚ୍ଚାରଣ ବି କ୍ରମେ କ୍ରମେ ଲୋପ ହେବା ଉପରେ ।"

ତଳ ଶ୍ରେଣୀରୁ ମାଧ୍ୟମିକ ଶିକ୍ଷା ପର୍ଯ୍ୟନ୍ତ ପାଠ୍ୟପୁସ୍ତକର ପୂର୍ବାପର ସଂପର୍କଯୁକ୍ତ ପୁସ୍ତକ ପ୍ରଚଳନର ସପକ୍ଷରେ ସେ ସ୍ୱର ଉତ୍ତୋଳନ କରିଥିଲେ । ଏହାକୁ ସେ ଶିକ୍ଷକର ପରମ କର୍ତ୍ତବ୍ୟ ବୋଲି ମନେକରି ପାଠମାଳା, ନାଗରିକ ପାଠମାଳା, ସାହିତ୍ୟପ୍ରଭା, ଜୀବନୀ ଓ ପ୍ରବନ୍ଧ ଇତ୍ୟାଦି ରଚନା କରିଥିଲେ ।

## ଡିଗ୍ରୀ ଓ ଡକ୍ଟରେଟ୍ :

ଭାରତୀୟମାନେ ଡିଗ୍ରୀ ଓ ଡକ୍ଟରେଟ୍ ହାସଲ ପାଇଁ ବ୍ୟଗ୍ର ଥିଲାବେଳେ ଓ ନିଜେ ମଧ୍ୟ ଇଂରାଜୀରେ ସେକ୍ସପିଅର ଓ କାଳିଦାସଙ୍କ ମଧ୍ୟରେ ତୁଳନାତ୍ମକ ସନ୍ଦର୍ଭ ଲେଖି ଡକ୍ଟରେଟ୍ ଡିଗ୍ରୀ ହାସଲ କରିଥିଲାବେଳେ, ଏ ସଂପର୍କରେ ସେ କହନ୍ତି —

"ଦେଶକୁ ଫେରି ନାନା ପଦରେ ମୋତେ କାମ କରିବାକୁ ପଡ଼ିଛି । କିନ୍ତୁ କୌଣସି ହେଲେ ପଦରେ ପିଏଚ୍ ଡ଼ି. ଡିଗ୍ରୀ ଅଫିସିକ କାମରେ ମୋତେ ବିଶେଷ ସହାୟତା କରିଛି ବୋଲି ମନେହେଉନି । ଇନସ୍‌ପେକ୍ଟର ହୋଇଛି, ହେଡ୍‌ମାଷ୍ଟର ହୋଇଛି,

ଏଡ଼ୁକେଶନାଲ୍ ଆଡ଼୍‌ଭାଇଜର, ପ୍ରିନ୍‌ସିପାଲ, ସୋସିଆଲ ଏଡ଼ୁକେଶନ ଅଫିସର ହୋଇଛନ୍ତି—କିନ୍ତୁ ଏସବୁର କୌଣସିଟି ହେଲେ କାମ-ପାଇଁ, ଉକ୍ତ ଲେଖି ମିଳୁଥିବା ଡିଗ୍ରୀ, ପିଏଚ୍. ଡ଼ି. ଏକାନ୍ତ ଅପରିହାର୍ଯ୍ୟ ନୁହେଁ । ସେହି ସେହି ପଦର ଦାୟିତ୍ୱ ତୁଲେଇବାର ଆବଶ୍ୟକୀୟ ନିପୁଣତା ଏ ଡିଗ୍ରୀରୁ ଆସିବାର ଆଶା କରାଯାଏ ନାହିଁ । × × × କିନ୍ତୁ ଏବେ ଓଡ଼ିଶା ଦେଶରେ ଦେଖୁଛୁ ପିଏଚ୍. ଡ଼ି. ମାଳ ମାଳ । ଏହି ଡିଗ୍ରୀର ଦୁରନ୍ତ ଆର୍ଥିକ ପ୍ରଲୋଭନରେ ଏ ରାଜ୍ୟର ପଣ୍ଡିତ ମଧ୍ୟ ଲଣ୍ଡନକୁ ଦଉଡ଼ନ୍ତି ଓଡ଼ିଆ ଉପରେ ପିଏଚ୍. ଡ଼ି. ଆଣିବାକୁ । ବନ୍ଧୁମାନଙ୍କଠାରୁ ଶୁଣିଛୁ, ଲଣ୍ଡନ ବିଶ୍ୱବିଦ୍ୟାଳୟର ପ୍ରଫେସରମାନେ ପଛରେ ଥଟ୍ଟା କରନ୍ତି, "ଦେଖନ୍ତୁ ଏ ଇଣ୍ଡିଆନ୍‌ଗୁଡ଼ାଙ୍କୁ, ହିନ୍ଦି, ବଙ୍ଗଳା, ଓଡ଼ିଆରେ ରିସର୍ଚ୍ଚ ପାଇଁ ଏମାନେ ଲଣ୍ଡନ, କେମ୍ବ୍ରିଜକୁ କିପରି ଦଉଡ଼ୁଛନ୍ତି ! ଏ ଆଲୋଚନା କ'ଣ ଇଣ୍ଡିଆରେ ହୋଇପାରୁ ନ ଥାନ୍ତା !"

× × ×

ଶିକ୍ଷକତା, ଅଧ୍ୟକ୍ଷତା ବା ଅଧ୍ୟାପନାର ନିପୁଣତା ପାଇଁ ପିଏଚ୍. ଡ଼ି. ଡିଗ୍ରୀର ସେପରି କୌଣସି ବିଶିଷ୍ଟ ଉପଯୋଗିତା ନ ଥିଲେହେଁ, ଏହି ଅନ୍ଧରାଜ୍ୟରେ ଏ ଡିଗ୍ରୀ ପାଇ ଆସିଲେ କେବଳ ବିଭାଗୀୟ ଉନ୍ନତି ନୁହେଁ, ସାଥେ ସାଥେ ଛ'ଟା ଇନ୍‌କ୍ରିମେଣ୍ଟ ମଧ୍ୟ ପାଇବାର ବ୍ୟବସ୍ଥା ଅଛି ବା ଥିଲା । ଦେଶରେ ଆଜି ଯେ ମାଳ ମାଳ ପିଏଚ୍. ଡ଼ି., ତାର ମୂଳ ପ୍ରେରଣା ଏହି ଛ'ଟି ଇନ୍‌କ୍ରିମେଣ୍ଟ ଓ ବିଭାଗୀୟ ବୃଦ୍ଧି ପାଇଁ ଅସ୍ୱାସ୍ୟୋଜନ ମାତ୍ର । ଗବେଷଣା ଓ ଜ୍ଞାନାହରଣ ବା ନିଜ ଅଧ୍ୟାପନାର ଉନ୍ନତିପାଇଁ ହିଁ କେତେଜଣ ବିଦେଶ ଯାଇଛନ୍ତି, ତା' ଉପରେ ଥେସିସ୍ ଲେଖା ହେବା କଥା !"

ନିର୍ଭୀକ, ସ୍ପଷ୍ଟବାଦୀ ଶିକ୍ଷାବ୍ରତୀ, ଆଦର୍ଶ ଶିକ୍ଷକ ଭାବରେ ଡକ୍ଟର ମାନସିଂହ ଶିକ୍ଷାକ୍ଷେତ୍ରରେ କଳାବଜାରକୁ ରୁକ୍ଷ କଣ୍ଠରେ ସମାଲୋଚନା କରୁଥିଲେ । ଶିକ୍ଷାନୁଷ୍ଠାନରୁ ସ୍ୱାର୍ଥାନ୍ଧ ସଙ୍କୀର୍ଣ୍ଣତା ଲୋପପାଉ, ଏହାହିଁ ତାଙ୍କର ଇଚ୍ଛା ଥିଲା ।

## ହରିଶ୍ଚନ୍ଦ୍ର ବଡ଼ାଳ ଓ ମାୟାଧର ମାନସିଂହ :

କବି ମାନସିଂହଙ୍କ କଲେଜ ଜୀବନରେ ରଚିତ 'ତରୁଣ କବିର ଆଶା' ଶୀର୍ଷକ କବିତା ଉତ୍କଳସାହିତ୍ୟ ଓ ୨୧, ବୈଶାଖ ୧୩୩୫ ଏପ୍ରିଲ୍ ୧୯୨୮ ସଂଖ୍ୟାରେ ପ୍ରକାଶ ପାଇଥିଲା ।

ଏହି କବିତାଟି ଉତ୍କଳ-ସାହିତ୍ୟ ପତ୍ରିକାରେ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଛାତ୍ରମାନଙ୍କ ମଧ୍ୟରେ ଆଲୋଡ଼ନ ତଥା ଆନ୍ଦୋଳନ ଦେଖା ଦେଇଥିଲା । ନବୀନ କବି ମାନସିଂହ ଓ ପ୍ରବୀଣ ସମ୍ପାଦକ ବିଶ୍ୱନାଥ କର ଉଭୟେ କଠୋର ସମାଲୋଚନାର ଶରବ୍ୟ ହୋଇ-ଥିଲେ । ଏ କବିତାରେ ଥିବା ନିମ୍ନୋକ୍ତ ପଂକ୍ତି ସବୁ ସମାଲୋଚନାର କେନ୍ଦ୍ରବିନ୍ଦୁ ପାଲଟିଯାଇଥିଲା ।

"ଲଭିଥିଲି ଗୁଡ଼ ପୃଥିବୀ ବାଧା
ପୂଜିବି ସେ ମୋର ହୃଦୟ ରାଧା
ବଜାଇ ମୁରଲୀ ମୁଁ ଅବିରତ
କାହିଁ ବିରତ ?
ଅମର ବୃନ୍ଦାବନ ଯାମିନୀ ତଳେ
ସେ ବଧୂ କୋମଳ ଜଘନ ପରେ
ଜୀବନ ମରଣ ଯାଆନ୍ତୁ ଭୁଲି
ସପନ ପରି ।

× × ×

ତାଙ୍କରେ ଥାଆନ୍ତା ରସ କବିତା
ଚିର ଯଉବନ ପ୍ରଣୟ ଗୀତା
ପ୍ରେୟସୀ ପାଆନ୍ତ, ଚୁମନ୍ତ ମୁଖ
ପୂରନ୍ତା ବୁକ ।
ବୁଲନ୍ତ ପୁଣି ମୁଁ ରସିକ ପରି,
ସବୁ କିଶୋରୀଙ୍କ ଚିବୁକ ଧରି
ବୋଲନ୍ତ, ସବୁରି ବାନ୍ଧବ ମୁହିଁ
ଜାଣ ସୁମୁହିଁ ।

× × ×

ଗରିବ କବିର ସଂସାର ପୀଡ଼େ
କବିତାକୁ ବେଳ ନାହିଁ ଏ ଭିଡ଼େ
ଫଗୁଣ ଚଇତ ଚଳଇ ଆସେ
କ ଯାଏ ଆସେ ।”

‘ସବୁ କିଶୋରୀଙ୍କ ଚିବୁକ ଧରି’ ପଦକୁ, ସହକାରର ତତ୍କାଳୀନ ସମ୍ପାଦକ ମାର୍ଚ୍ଚ ୧୯୨୮ ସଂଖ୍ୟାରେ ଅତି ତୀବ୍ର ମନ୍ତବ୍ୟ ପ୍ରକାଶ କରିଥିଲେ । ତେଣୁ ଏହି ପଦଟି ‘ଧୂପ’ ସଙ୍କଳନରେ ପ୍ରକାଶିତ ‘ତରୁଣ କବିର ଆଶା’ କବିତାରେ ସ୍ଥାନ ପାଇ ନ ଥିଲା ।

ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବଡ଼ାଲ ମାନସିଂହଙ୍କ ଏହି ଧରଣର କବିତାର ତୀବ୍ର ସମାଲୋଚକ ଥିଲେ । କେବଳ ‘ତରୁଣ କବିର ଆଶା’ ନୁହେଁ, କବିଙ୍କ ଲିଖିତ ‘ପୁଷ୍ପିତା’ର ମଧ୍ୟ ସେ କଟୁ ସମାଲୋଚକ ଥିଲେ । କବି ଓ ସମାଲୋଚକଙ୍କ ଉତ୍ତର-ପ୍ରତ୍ୟୁତ୍ତର ବହୁଦିନ ପର୍ଯ୍ୟନ୍ତ ଓଡ଼ିଆ-ସାହିତ୍ୟ-ଆକାଶକୁ ମେଘାଚ୍ଛନ୍ନ କରି ରଖିଥିଲା ।

ଏଥିରୁ ଆଜକାଲିକାର ସାଧାରଣ ପାଠକସମାଜଙ୍କର ଧାରଣା ହେବା ସ୍ବତଃସିଦ୍ଧ ଯେ, କବି ମାନସିଂହ ଓ ବର୍ଡାଲ ଉଭୟେ ଉଭୟଙ୍କର ପରମ ଶତ୍ରୁ ହୋଇ ଉଠିଥିବେ !

କିନ୍ତୁ ଆଶ୍ଚର୍ଯ୍ୟର କଥା, ଡକ୍ଟର ମାନସିଂହ ଯେତେବେଳେ ବିଲାତ ଯାତ୍ରା କରିବାକୁ ବାହାରିଲେ, ଶ୍ରୀଯୁକ୍ତ ବର୍ଡାଲ ସ୍ୱେଚ୍ଛା-ପ୍ରଣୋଦିତ ଭାବରେ ତାଙ୍କୁ ବହୁପ୍ରକାର ସାହାଯ୍ୟ ସହଯୋଗ କରିଥିଲେ । ଏପରି କି ସେ ତାଙ୍କୁ ଆର୍ଥିକ ସାହାଯ୍ୟ ପ୍ରଦାନ କରି ତାଙ୍କର ବିଲାତଯାତ୍ରା ଇଚ୍ଛା ସଫଳ କରିଥିଲେ ।

## ବୌଦ୍ଧ ମାନସିଂହ ଓ ବୈଦିକଚେତନା :

ମାନସିଂହ ବୁଦ୍ଧଦେବଙ୍କ ବ୍ୟକ୍ତିତ୍ୱ ଓ କର୍ମଧାରାରେ ପ୍ରଭାବିତ ହୋଇ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ ମଧ୍ୟ ବୈଦିକ ସଂସ୍କୃତି ଓ ପରଂପରା ପ୍ରତି ତାଙ୍କର ଅଦ୍ଭୁତ ଧରଣର ମୋହ ଥିଲା । ତେଣୁ ସେ ତାଙ୍କର ବଡ଼ଝିଅକୁ ରୁପର୍ଟ ନାମକ ଜଣେ ପଦସ୍ଥ ମାନ୍ଦ୍ରାଜୀ ଖ୍ରୀଷ୍ଟିୟାନ୍ ସଙ୍ଗରେ ବିବାହ ଦେଲାବେଳେ, ବର ଓ ବରପିତାଙ୍କୁ ସେଦିନ ପାଇଁ ହିନ୍ଦୁଧର୍ମ ଗ୍ରହଣ କରିବାକୁ ପ୍ରବର୍ତ୍ତାଇ, ରୁପର୍ଟଙ୍କୁ 'ରୂପବର୍ତ୍ତ'ରେ ପରିଣତ କରି, ନିଜେ ବର୍ହିଧାରଣ ପୂର୍ବକ କନ୍ୟାପିତା ଭାବରେ 'ହୋମ' ସମୀପରେ କନ୍ୟା ଅର୍ପଣ କରିଥିଲେ ।

ପୁଣି ପଚାଶ ଜାତୁଣୀର ବର୍ଷ ପୂରିବା ଦିନ ଶ୍ରୀଯୁକ୍ତ ଶ୍ରୀଧର ମହାପାତ୍ରଙ୍କ ବୈଦିକ ମନ୍ତ୍ରରେ ତାଙ୍କୁ ଆଶୀର୍ବାଦ କରିବାକୁ ଅନୁରୋଧ କରିଥିଲେ ।

ଏହା ବୌଦ୍ଧଧର୍ମାବଲମ୍ବୀ ମାନସିଂହଙ୍କ ଶୁଦ୍ଧପୂତ ବୈଦିକ ଅନ୍ତରର ପରିଚୟ ମାତ୍ର ।

## ସୀମାବଦ୍ଧ ଶିକ୍ଷାୟତନ :

ଶିକ୍ଷାର ବ୍ୟାପକ ପ୍ରସାର ପାଇଁ ସରକାରୀ ଓ ବେସରକାରୀ କ୍ଷେତ୍ରରେ ଉଦ୍ୟମ ଚାଲିଥିଲାବେଳେ, ସେ ଏତେଗୁଡ଼ିଏ ହାଇସ୍କୁଲ, କଲେଜ ବା ବିଶ୍ୱବିଦ୍ୟାଳୟ ସ୍ଥାପନର ପକ୍ଷପାତୀ ନ ଥିଲେ । ସେ ଚାହୁଁଥିଲେ, ସୀମିତ ଶିକ୍ଷାୟତନରେ ମାତ୍ର କେତେଜଣ ପୁନର୍ବାଚିତ ଛାତ୍ର ଅଧ୍ୟୟନ କରନ୍ତେ, ତାହାହେଲେ ଶିକ୍ଷାର ମାନଦଣ୍ଡ ବଜାୟ ରହନ୍ତା । ଏକାଧିକ ବିଶ୍ୱବିଦ୍ୟାଳୟ ସ୍ଥାପନ ନ କରି, ଓଡ଼ିଶାର କେତେକ ନିର୍ଦ୍ଦିଷ୍ଟ ସ୍ଥାନରେ ନିର୍ଦ୍ଦିଷ୍ଟ ବିଦ୍ୟାଧ୍ୟୟନ ପାଇଁ ମାତ୍ର କେତୋଟି ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲେ ଭଲ ହୁଅନ୍ତା ।

ଏହାର ସପକ୍ଷରେ ମଧ୍ୟ ସେ ସ୍ୱ-ଅଭିମତ ଉପସ୍ଥାପନ କରିଅଛନ୍ତି । ସେ କହିଛନ୍ତି, "XX ଆଜି ଆଜି, ଆମର ଶାସକମାନେ, ସୁନ୍ଦରଗଡ଼ରେ କଲେଜ, ମୟୂରଭଞ୍ଜରେ କଲେଜ, କଳାହାଣ୍ଡିରେ କଲେଜ ବସେଇ ଗଡ଼ଜାତମାନଙ୍କର ବା ଓଡ଼ିଆ ଜାତିର ଐକ୍ୟ କି ଅନୈକ୍ୟ ସାଧୁଛନ୍ତି, ଠିକଏ ଚିନ୍ତା କରନ୍ତୁ । ଆଜି ରାଜନୈତିକ ଫାଇଦା ଉଠାଇବା ପାଇଁ ଏସବୁ କରି ଶାସକମାନେ ଆତ୍ମପ୍ରସାଦ ଅନୁଭବ କରୁଥିଲେହେଁ, ଏ ସବୁ ଜାତୀୟ ଐକ୍ୟ ଦିଗରୁ ଘୋର ଆତ୍ମଘାତୀ ବ୍ୟବସ୍ଥା ବୋଲି ମୁଁ ଦୃଢ଼ସ୍ୱରରେ କହିବି । କୋଡ଼ିଏ ବର୍ଷତଳେ ଲେଖକ ଯେପରି କହିଥିଲେ, ସେହି ମତାନୁଯାୟୀ, ପ୍ରତ୍ୟେକଟି-ଉଚ୍ଚ ଶିକ୍ଷାନୁଷ୍ଠାନକୁ ଗୋଟିଏ ପ୍ରକାରର ଅନନ୍ୟ ବୈଶିଷ୍ଟ୍ୟ ଦେଇ, ସେଠାରେ ସମଗ୍ର ରାଜ୍ୟର ସବୁ ଅଞ୍ଚଳର ପିଲାଙ୍କୁ ଏକତ୍ର କରାଇବାହିଁ ଜାତୀୟ-ଏକତାନୁଭବ ବା ନାଶନାଲ୍ ଇଣ୍ଟିଗ୍ରେସନ୍‌ର ପ୍ରଥମ ଓ ଅପରିହାର୍ଯ୍ୟ ସୋପାନ । ବର୍ତ୍ତମାନ ଯେପରି ଜିଲ୍ଲା ଜିଲ୍ଲାରେ ଏକାଧିକ କଲେଜ ଓ ଗାଏଁ ଗାଏଁ ଏକାଧିକ ହାଇସ୍କୁଲ୍ ବସାଇ ଦିଆଯାଉଛି, ତା'ଦ୍ୱାରା କେବଳ ସ୍ଥାନୀୟ

ସଂକୀର୍ଣ୍ଣତାକୁ ପ୍ରଶ୍ରୟ ଦିଆଯାଇ ମହତ୍ତର ଜାତିପ୍ରୀତିତାକୁ ବଳି ଦିଆଯାଉଛି । ମୋର ଆଶଙ୍କା, ଦେଶ ଦିନେ ନା ଦିନେ ଏହାର କୁଫଳ ଭୋଗିବ ।" (ଶି.ବି. ଗାଥା-୪୩ ପୃଷ୍ଠା)

ଏଥିରୁ ଡକ୍ଟର ମାନସିଂହଙ୍କ ଶିକ୍ଷାପ୍ରୀତି ଓ ଜାତୀୟ ସଂହତି ପ୍ରତି ନିଜସ୍ୱ ଅଭିମତ ସ୍ପଷ୍ଟ ହୋଇଥାଏ ।

## ଶିକ୍ଷାରେ ଶ୍ରେଣୀବିଭାଜନ ବ୍ୟବସ୍ଥା :

ଶିକ୍ଷାବିତ୍‌ମାନେ ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଶିକ୍ଷାର୍ଥୀମାନଙ୍କୁ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ ବିଭାଜନ ବ୍ୟବସ୍ଥା କରିଥିଲେ ମଧ୍ୟ ଶିକ୍ଷାବିତ୍ ମାନସିଂହ ଏହି ବ୍ୟବସ୍ଥାରେ ସନ୍ତୁଷ୍ଟ ନ ଥିଲେ । ସେ କହୁଥିଲେ, ଏମ୍. ଏ. ଓ ମାଟ୍ରିକୁଲେଶନ ସ୍ତରର ପରୀକ୍ଷାରୁ ଏ ପ୍ରକାର ବିଷମ ଶ୍ରେଣୀବିଭାଜନ ବ୍ୟବସ୍ଥା ଉଠାଇ-ଦିଆଯାଉ ।

ତେଣୁ ସେ ଲେଖିଛନ୍ତି, "ଗୋଟିଏ ମାର୍କର ଏପଟ ସେପଟରେ ଗୋଟିଏ ପିଲର କପାଳରେ ଲାଞ୍ଛନାର ଦାଗ ଲଗାଯାଉଛି 'ତୃତୀୟ ଶ୍ରେଣୀ' ବୋଲି । ମୋ ମତରେ ଏହା କେବଳ ଅଯୌକ୍ତିକ ଓ ଅର୍ଥହୀନ ବ୍ୟବସ୍ଥା ନୁହେଁ, ଏକ ଘୋର ଅମାନବିକ କର୍ମ । ଯେବେ ତୃତୀୟ ଶ୍ରେଣୀକୁ ତ କଲେଜରେ ପଶିବାକୁ ଦେଉଛ, ଯେପରି ଦେଉଛ ଗୌରବାବହ ପ୍ରଥମ ଶ୍ରେଣୀକୁ । ପ୍ରଭେଦ କ'ଣ ? ବାକଶା-ବେଳେ ତୃତୀୟ, ଦ୍ୱିତୀୟ ଓ ପ୍ରଥମ ସମସ୍ତେ ତ ଏକା ସ୍କେଲ୍-ଅଫ୍-ପେ ଭୋଗ କରନ୍ତି । କାହିଁକି ତେଣୁ ଏ ଜାତିବିଭାଗ ? କି ତାର ତାତ୍ପର୍ଯ୍ୟ ? × ×

'ଇଲଷ୍ଟ୍ରେଟେଡ୍ ୱିକ୍‌ଲି'ର ଅକ୍ଟୋବର ୮ ତାରିଖ ୧୯୬୧ ସଂଖ୍ୟାରେ ଉତ୍ତରପ୍ରଦେଶର ପ୍ରସିଦ୍ଧ ଉର୍ଦ୍ଦୁ କବି ଓ ଶିକ୍ଷାବିତ୍

ଫିବ୍‌ରକ୍ ଗୋରକ୍ଷପୁଷ୍ପ ସେହି ପତ୍ରିକାର ପୂର୍ବସଂଖ୍ୟାରେ ପ୍ରକାଶିତ ଡକ୍ଟର ମାନସିଂହଙ୍କ ଏତାଦୃଶ ମତାମତକୁ ଲକ୍ଷ୍ୟ କରି ଲେଖିଥିଲେ, "ଡକ୍ଟର ମାନସିଂହ ଶିକ୍ଷାପ୍ରଣାଳୀର ଅନେକ ଗୋପନ ସତ୍ୟକୁ ପ୍ରକାଶ କରିଦେଲେ । ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତିମାନସିଂହଙ୍କ ମତକୁ ସମର୍ଥନ କରି କହିବେ ଯେ, ଶିକ୍ଷାକ୍ଷେତ୍ରରୁ ତୃତୀୟ ଶ୍ରେଣୀ ସାର୍ଟିଫିକେଟ ଉଠିଯିବା ଉଚିତ ।" × ×

## ଓଡ଼ିଶା-କଲେଜ୍-ଅବ୍-ଆର୍ଟସ୍-ଏଣ୍ଡ-କ୍ରାଫ୍‌ଟ୍‌ସ୍ ଓ ସାହିତ୍ୟ ଏକାଡେମୀ

ଡକ୍ଟର ମାନସିଂହ ଚାହିଁଥିଲେ ଓଡ଼ିଶା-କଲେଜ-ଅଫ୍-ଆର୍ଟସ୍-ଏଣ୍ଡ୍-କ୍ରାଫ୍‌ଟ୍‌ସ୍ କଲେଜ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରରେ ରହୁ । କିନ୍ତୁ ସରକାର ସ୍ଥିର କଲେ, ଏହି କଲେଜ ଖଲ୍ଲିକୋଟରେ ସ୍ଥାପିତ ହେଉ । ତେଣୁ ଏହାର ବିରୋଧରେ ମତ ଦେଇ ସେ ଲେଖିଲେ, "× × କିନ୍ତୁ ନୂତନ ମନ୍ତ୍ରୀମଣ୍ଡଳ ଆର୍ଟ ସ୍କୁଲ ଯୋଜନାକୁ ଓଡ଼ିଶା କଳାର ଶ୍ରେଷ୍ଠ ପୀଠ ଓ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରରେ ନ ରଖି, ସୁଦୂର ଏକ ଜଙ୍ଗଲି ଗାଁ ଖଲ୍ଲିକୋଟରେ, ସେଠା ରାଜାଙ୍କ ପୁରୁଣା ନଅରକୁ କିଣାଇ ଅତି ଗୌରବାବହ ଭାବରେ ସେଠାରେ ପ୍ରତିଷ୍ଠିତ କରାଇଦେଲେ ଓ ନିଜ ବୁଢାଗୁଡ଼ି ତଳେ ରହିବା ଭଳି ସାହିତ୍ୟ ଏକାଡେମୀଟିଏ ବି' ଠିଆ କରାଇଦେଲେ । ପୃଥିବୀର କୌଣସି ଦେଶରେ ସେ ଦେଶର ଶ୍ରେଷ୍ଠ କଳାନୁଷ୍ଠାନ ରାଜଧାନୀଠାରୁ ତ ଦୂରରେ ନାହିଁ, ପୁଣି କଳା ସହିତ ସମ୍ପର୍କଲେଶଶୂନ୍ୟ ଏକ ଜଙ୍ଗଲି ଗାଁରେ କୌଣସି ରାଷ୍ଟ୍ରୀୟ କଳା-ଶିଳ୍ପ-ଅନୁଷ୍ଠାନ ସ୍ଥାପନ କରାଯାଇ ନାହିଁ । କୌଣସି ରାଜ୍ୟର ସାହିତ୍ୟ ଏକାଡେମୀ ବା ଆକାଡେମୀ ନାମଧାରୀ କୌଣସି ହେଲେ ଅନୁଷ୍ଠାନ ଏକ ସର୍କାରୀ ଡିପାର୍ଟମେଣ୍ଟ ନୁହେଁ । ଏହା ଆକାଡେମୀ ଶବ୍ଦର ହିଁ ଅପମାନ ।"

ମାନସିଂହଙ୍କ ସ୍ୱପ୍ନ ଥିଲା, ଓଡ଼ିଶା ସାହିତ୍ୟ ଆକାଡେମୀ ସର୍କାରୀ ଦପ୍ତର ହୋଇ ନ ରହୁ । ସେ ଚାହୁଁଥିଲେ, ଓଡ଼ିଶା ସାହିତ୍ୟ ଆକାଡେମୀର ସମ୍ବିଧାନ ବଦଳାଇ ତାକୁ ଯଥାସମ୍ଭବ ସରକାରୀ କର୍ତ୍ତୃତ୍ୱରୁ ମୁକ୍ତ କରି, ଓଡ଼ିଶାର ସର୍ବାଞ୍ଚଳର ବୁଦ୍ଧିଜୀବୀମାନଙ୍କର ପ୍ରକୃତ ପ୍ରତିନିଧିମୂଳକ ଅନୁଷ୍ଠାନ ରୂପେ ସାହିତ୍ୟ ଏକାଡେମୀକୁ ଛିଡ଼ା କରାଇବାକୁ ।

ମାନସିଂହଙ୍କ ଲକ୍ଷ୍ୟ ଥିଲା, ସାହିତ୍ୟ ଆକାଡେମୀରେ ନିର୍ବାଚନ ପ୍ରଥାକୁ ପ୍ରତିଷ୍ଠିତ କରିବା ଓ ତାହାକୁ ସ୍ୱୟଂସମ୍ପୂର୍ଣ୍ଣ କରିବା, ପ୍ରେସିଡେଣ୍ଟ ଓ ସମ୍ପାଦକଙ୍କର ଯୋଗ୍ୟତାବଳୀକୁ ଗୌରବାବହ ସ୍ତରରେ ରଖିବା ଓ ସର୍ବୋପରି ଏକାଡେମୀକୁ କେବଳ ରାଜନୈତିକ ଓଡ଼ିଶା ନୁହେଁ, ନିଖିଳ ପ୍ରାକୃତିକ ଉତ୍କଳର ପ୍ରତିନିଧି-ଅନୁଷ୍ଠାନ କରି ତା' ଦେଇ ଓଡ଼ିଆ ଜାତି ଭିତରେ ଜାତୀୟ ଚେତନା ଜାଗ୍ରତ କରାଇବା ।

'ଶିକ୍ଷାବିଦର ଗାଥା' ପୁସ୍ତକର ୧୭୫।୧୭୬ ପୃଷ୍ଠାରେ ସେ ସ୍ପଷ୍ଟ ଉଲ୍ଲେଖ କରିଅଛନ୍ତି, "ଓଡ଼ିଶା ରାଜ୍ୟରେ ଆକାଡେମୀ ଏକ ନୂଆ ପଦାର୍ଥ ହୋଇପାରେ ବା ଅଜ୍ଞ କେତେକ, ନିଜର ହେତୁ ଓ ଦଳୀୟ ମାନସିକ ସ୍ତରରୁ ତାକୁ କେବଳ ରାଜନୀତି ଓ କ୍ଷମତା ପ୍ରୟୋଗର ଖେଳନା ରୂପେ ବ୍ୟବହାର କରିପାରନ୍ତି ; କିନ୍ତୁ ସେମାନଙ୍କର ବୁଝିବା ଉଚିତ ଯେ, ଆକାଡେମୀ ଏକ ବିଶ୍ୱବ୍ୟାପୀ ଅନୁଷ୍ଠାନ ଓ ସର୍ବତ୍ର ଯେଉଁ ଐତିହ୍ୟ, ଯେଉଁ ଲକ୍ଷ୍ୟ ଓ ଯେଉଁ ରୀତିରେ ଆକାଡେମୀ ସବୁ ପରିଚାଳିତ ହୁଏ, ଓଡ଼ିଶାରେ ତାହା ସେପରି ପରିଚାଳିତ ନ ହେଲେ ତାହାଯୋଗୁଁ ସମଗ୍ର ଦେଶ ଓ ଜାତିକୁ ଉପହାସିତ ହେବାକୁ ହେବ, ଯେପରି ହୋଇଉଠିଛି ଓଡ଼ିଆ

ଏମ୍. ଏ. । ଆକାଡ଼େମୀ ହେଉଲ୍ ଏକ ଜାତିର ସମସ୍ତ ବୌଦ୍ଧିକ ସାଧନାର ଶେଷ ଓ ଶ୍ରେଷ୍ଠ ନକସ ଓ ନିଶାଣ । ସେଠାରେ ଯେକୌଣସି ଏ ଲୋକର ସ୍ଥାନ ନାହିଁ । ତାହା ପଦ ପ୍ରତିପତ୍ତିର ଆଖଡ଼ା ଘର ନୁହେଁ । ଏପରି ଚେଷ୍ଟା କରିବାହିଁ ଜାତି ଭାବରେ ଆମର ମୂର୍ଖତା ପ୍ରମାଣ କରିବ ଓ କରୁଛି । × ×”

ମାନସିଂହଙ୍କ ମତାମତ ଏବେ ମଧ୍ୟ ଏ ଦେଶର ଶାସକ ଓ ସରକାରୀ ଦପ୍ତରର ବଡ଼ ବ୍ୟକ୍ତିମାନଙ୍କ ଦ୍ୱାରା ସମର୍ଥିତ ଓ ଗୃହୀତ ହୋଇ ନାହିଁ । ତଥାପି ବହୁ କାରଣରୁ ଡକ୍ଟର ମାନସିଂହ ଦେଶର ଅଧିକାଂଶ ଶିକ୍ଷାବିତ୍, ଲେଖକ ଓ ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ସମର୍ଥନ ଲାଭ କରିଥାନ୍ତି ।

## ମ୍ୟୁଚୁଆଲ୍-ଆଡ଼ମିରେଶନ୍-ସୋସାଇଟି’ (ପରସ୍ପର-ପ୍ରଶଂସା ସଂଘ)

ଆଜକାଲି ପରି ପରସ୍ପର-ପ୍ରଶଂସା ସଂଘ ମାଧ୍ୟମରେ ଶସ୍ତା ଲୋକପ୍ରିୟତା ହାସଲ କରିବା ପ୍ରଣାଳୀ ଦେଖି ଡକ୍ଟର ମାନସିଂହ ଅତ୍ୟନ୍ତ କ୍ଷୁବ୍ଧ ହେଉଥିଲେ । କାରଣ ବହୁ କ୍ଷମତାଶାଳୀ ଓ ପଦସ୍ଥ ବ୍ୟକ୍ତିମାନେ ‘ସଂଘ’ ମାଧ୍ୟମରେ ଆଶାତୀତ ସାଫଲ୍ୟ ଲାଭ କରି ନିଜକୁ ବଡ଼ ମନେ କରୁଥିଲେ ।

ଏହି ପଦ୍ଧତିକୁ ଘୃଣା କରି ସେ ଲେଖିଛନ୍ତି, “ଇତରକୁ ଉତ୍ସାହ ଦେଇପାରେ କେବଳ ଆଉ ଏକ ଇତର । ପତ୍ର-ପତ୍ରିକାରେ କୁହାର ଭୟ ବା ପଦସ୍ଥ ପ୍ରଭାବଶାଳୀଠାରୁ ଅନିଷ୍ଟର ଭୟରେ ପ୍ରତିଭା ସାଲ୍ୟୁଟ୍ ଦେଇ ନ ପାରେ କୌଣସି ଅଯୋଗ୍ୟତାକୁ, ଯେପରି କରୁଛନ୍ତି ଏବେ ବହୁ ଲେଖକ-ଅଧ୍ୟାପକ । × × ଏବେ ଓଡ଼ିଆ

ସାହିତ୍ୟରେ ସେ ପ୍ରକାର ପାରସ୍ପରିକ ସ୍ତୁତି-ଗାନର ପ୍ରଚୁରତା ମଧ୍ୟ ବେଶ୍ ଲକ୍ଷିତ ହେଉଛି ।××"

ଏଥିରୁ ଆମ୍ଭେମାନେ ଶିକ୍ଷା କରିବା ପାଇଁ ଯେ ପ୍ରଚୁର ଖୋରାକ ପାଇଥାଉଁ, ଏଥିରେ ସନ୍ଦେହ ନାହିଁ ।

## ଅଧ୍ୟକ୍ଷ ମାନସିଂହ :

୧୯୦୭ ମସିହାରେ ଓଡ଼ିଶା ସଙ୍ଗେ ଦେଶୀୟ ରାଜ୍ୟମାନଙ୍କର ମିଶ୍ରଣ ଘଟିବା ଫଳରେ ସେ ଆଉ ଶିକ୍ଷା ପରାମର୍ଶଦାତା ପଦରେ ରହିଲେ ନାହିଁ । ସେ ନୂତନ ଜୀବିକା ଅନ୍ୱେଷଣ ପାଇଁ କଟକ ଆସିଲେ ।

ଏହି ସମୟରେ ରେଭେନ୍ସା କଲେଜରେ ନୂଆ କରି ଓଡ଼ିଆରେ ଏମ୍ ଏ. ବିଭାଗ ଖୋଲିଲା । କବି ମାନସିଂହ ତହିଁରେ ଅଧ୍ୟାପକ ଭାବରେ ଯୋଗଦେଲେ । କିନ୍ତୁ ପବ୍ଲିକ୍ ସର୍ଭିସ୍ କମିଶନ୍ ତାଙ୍କୁ ଅନୁକୂଳ ମତ ନ ଦେବାରୁ ସେ ଦକ୍ଷିଣ ଓଡ଼ିଶାର ସ୍କୁଲ୍ ସମୂହର ଇନ୍‌ସପେକ୍ଟର ଭାବରେ ବଦଳି ହେଲେ ।

ଏହାପରେ ସେ ଗଙ୍ଗାଧର ମେହେର କଲେଜରେ ଅଧ୍ୟକ୍ଷ ଭାବରେ କାର୍ଯ୍ୟଭାର ଗ୍ରହଣ କରିଥିଲେ ।

ଗଙ୍ଗାଧର ମେହେର କଲେଜ, ସମ୍ବଲପୁରରେ ସେ ଯେଉଁ କେତୋଟି ବର୍ଷ କଟାଇଥିଲେ, ତାହା ତାଙ୍କ ଜୀବନର ସର୍ବଶ୍ରେଷ୍ଠ ସମୟ ବୋଲି ନିଜେ ମାନସିଂହ ପ୍ରକାଶ କରିଛନ୍ତି ।

ପ୍ରକୃତରେ ଦେଖିବାକୁ ଗଲେ, ମେହେର କଲେଜରେ ମାନସିଂହଙ୍କ କାର୍ଯ୍ୟକାଳ ଅତୀବ ପ୍ରଶଂସନୀୟ । ତାଙ୍କର ସୁପରିଚାଳନା ଓ ସୁପରିକଳ୍ପନା ଫଳରେ ଏହି କଲେଜ ତାଙ୍କ ସମୟରେ ଓଡ଼ିଶାର ଏକ ଆଦର୍ଶ କଲେଜରେ ପରିଣତ ହୋଇଥିଲା । ସେ ନିଜ ଉଦ୍ୟମରେ ସେହି କଲେଜରେ ବଗିଚା, କ୍ୟାଣ୍ଟିନ, କୋ-ଅପରେଟିଭ୍, ଡାଏରୀ ଫାର୍ମ, ଲେଣ୍ଡିଙ୍ଗ୍ ସୋସାଇଟି ପରି ଉନ୍ନତିମୂଳକ ଯୋଜନା କାର୍ଯ୍ୟକାରୀ କରିପାରିଥିଲେ ।

ସମ୍ବଲପୁର ଟ୍ରଷ୍ଟ ଫଣ୍ଡ୍ ପକ୍ଷରୁ ଅଧ୍ୟାପକମାନଙ୍କ ରହିବା ଗୃହ ନିର୍ମାଣ କେବଳ ତାଙ୍କର ଉଦ୍ୟମରେ ସଫଳ ହୋଇପାରିଥିଲା । ସେ କଲେଜ ଇଉନିୟନ ପକ୍ଷରୁ ଓଡ଼ିଆରେ 'ମେହେର ପ୍ରଦୀପ' ନାମକ ଏକ ମାସିକ ସାହିତ୍ୟ ପତ୍ରିକା ପ୍ରକାଶ କରାଇ ପାରିଥିଲେ ।

ଏହାଙ୍କ ସମୟରେ କଲେଜ ଇଉନିୟନ ପକ୍ଷରୁ ଏକ ନିଖିଳ ଉତ୍କଳ ଲେଖକ ସମ୍ମିଳନୀ ମଧ୍ୟ ଅନୁଷ୍ଠିତ ହୋଇପାରିଥିଲା ।

ଏହି ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ଭାବରେ ସେ ନିଜର ବିବିଧ ଭାବନା, କଳ୍ପନା ଓ ଆଦର୍ଶକୁ ନାନାଭାବରେ କାର୍ଯ୍ୟକାରୀ କରାଇଥିବାର ଦେଖିବାକୁ ମିଳେ ।

ଏ ସମ୍ପର୍କରେ ମାନସିଂହ ଶିକ୍ଷାବିଦ୍‌ର ଗାଥାରେ କହିଛନ୍ତି, "ଯାହାହେଉ, ବେସିକ୍ ବିରୁଦ୍ଧରେ କହିବାର ଅପରାଧ ଯୋଗୁ ଏଇ ଲେଖକ ହଠାତ୍ ଇନ୍‌ସପେକ୍ଟର ପଦରୁ ବଦଳି ହୋଇ ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ଭାବରେ ଗଙ୍ଗାଧର ମେହେର କଲେଜର ପ୍ରିନ୍‌ସିପାଲ୍ ରୂପେ ଯେ ବଦଳି ହେଲି, ଦଣ୍ଡଦାତା ଓ ଦଣ୍ଡଭୋକ୍ତା କେହି ସେତେବେଳେ କଳ୍ପନା କରି ନ ଥିଲେ ଯେ, ଏ ନିର୍ବାସନ ଏକ ସୁଖମୟ ପୁରସ୍କାରରେ ପରିଣତ ହେବ । × × "

ଏହି କଲେଜକୁ ଅଧ୍ୟକ୍ଷ ଭାବରେ ବଦଳି ହୋଇ ଆସିବାର ମାତ୍ର ଛଅମାସ ଭିତରେ ସେ କଲେଜ କାଣ୍ଟିନ୍‌ର ଉନ୍ନତି ପାଇଁ ଟ୍ରଷ୍ଟ ଫଣ୍ଡ୍‌ରେ ଗଚ୍ଛିତ ଥିବା ଟଙ୍କାରୁ ସମ୍ପୂର୍ଣ୍ଣ ନିଜ ଦାୟିତ୍ୱରେ ଦଶ ହଜାର ଟଙ୍କା ଆଣି, ସୁନ୍ଦର ଆଲମିରା ସେଟ୍ କିଣିବାଠାରୁ ଉନ୍ନତ ଖାଦ୍ୟ ପରିବେଷଣ ଦିଗରେ ସଫଳକାମ ହୋଇପାରିଥିଲେ ।

ପୁଣି କଲେଜ ପରିସର ମଧ୍ୟରେ ଗୋଟିଏ ଉନ୍ନତ ଆଦର୍ଶ ସୃଷ୍ଟି କରିବା ନିମନ୍ତେ ବାଳକବାଳିକା ନିମନ୍ତେ ଉଦ୍ଦିଷ୍ଟ କେତେ-ଗୁଡ଼ିଏ ମାକ୍‌ସିମ୍ ବା ସୂକ୍ତି ଲେଖାଇ କଲେଜ କାନ୍ଥରେ ଝୁଲାଇ ଦେଇଥିଲେ ।

ବାଳକମାନଙ୍କ ପାଇଁ ଦଶଟି ଓ ବାଳିକାମାନଙ୍କ ପାଇଁ ମଧ୍ୟ ସେହି ସମାନ ସଂଖ୍ୟକ ସୂକ୍ତି ଲେଖା ହୋଇଥିଲା ।

ବାଳକମାନଙ୍କୁ ନିଜ କର୍ତ୍ତବ୍ୟ ପାଳନ, ଅବସର ସମୟର ସଦୁପଯୋଗ, ନିରବତା ପାଳନ, ଅନ୍ୟ ପ୍ରତି ବିଶ୍ବସ୍ତଶୀଳ ହେବା, କୌଣସି ବିଶେଷ ଦିଗରେ ଆତ୍ମପ୍ରସ୍ତୁତିକରଣ, ଭଦ୍ରତା ଓ ନମ୍ରତା, ସାଧୁତା ଓ ବ୍ୟକ୍ତିଗତ ଭାବରେ ଭଦ୍ର, ଗୋଷ୍ଠୀଗତ ଭାବରେ ଶୃଙ୍ଖଳାଶୀଳ ହେବାକୁ ଉପଦେଶ ଦିଆଯାଇଥିଲା ।

ଛାତ୍ରୀମାନଙ୍କୁ ସ୍ୱାସ୍ଥ୍ୟ, ଚରିତ୍ର ଓ ଜ୍ଞାନ ମଧ୍ୟ ଦେଇ ମାତୃତ୍ୱ ଅର୍ଜନ, ଜୀବନର ଆଦର୍ଶ ନିର୍ବାଚନ, ଭଗ୍ନୀଜନୋଚିତ ବ୍ୟବହାର, ଦେହ ଓ ମନର ଶୁଦ୍ଧତାଚରଣ, ଯୌତୁକ ଦାବୀ ପ୍ରତ୍ୟାଖ୍ୟାନ, ସମୟର ସଦୁପଯୋଗ, ସ୍ୱାସ୍ଥ୍ୟ ଓ ସାରଲ୍ୟ ଉପାସନା ତଥା ମହାର୍ଘ ବସ୍ତ୍ରଭୂଷଣ ପ୍ରତି ଅନାସ୍ଥାଭାବ ପ୍ରଦର୍ଶନ ଇତ୍ୟାଦି ଦଶଟି ଉପଦେଶ ଦିଆଯାଇଥିଲା ।

କଲେଜର ସର୍ବାଙ୍ଗୀନ ଉନ୍ନତି ବିଧାନ ନିମନ୍ତେ ସେ ଷ୍ଟାଫ୍ କଲୋନୀ, ହଷ୍ଟେଲ୍ ଓ ପରିବର୍ଦ୍ଧିତ କଲେଜଗୃହ କରାଇବାରେ ସମର୍ଥ

ହୋଇଥିଲେ । କଲେଜକୁ ସେ ପ୍ରାଣ ଦେଇ ଭଲପାଉଥିଲେ ଓ ତା'ର ସମ୍ମାନରେ ଯେପରି ଆଞ୍ଚ ନ ଆସେ, ସେଥିପାଇଁ ଅହରହ ଉଦ୍ୟମ କରୁଥିଲେ । ଏଥିପାଇଁ କଲେଜ ଛାତ୍ରମାନଙ୍କୁ କଲେଜ ଅଧ୍ୟାପକମାନଙ୍କୁ ମନସ୍କାର କରିବାକୁ ଉପଦେଶ ଦେବାଠାରୁ ଆରମ୍ଭ କରି, ଲୁଗାପଟା କିପରି ପିନ୍ଧିବାକୁ ହେବ, କିପରି ଚଢ଼ିବ, ଘରେ କିପରି ପଢ଼ିବ, କ'ଣ ପଢ଼ିବ ଏସବୁ ଛୋଟ ଛୋଟ ବିଷୟରେ ମଧ୍ୟ ଉପଦେଶ ଦେବାକୁ ଭୁଲୁ ନ ଥିଲେ । ପୁଣି କଲେଜ ପରିସର ମଧ୍ୟରେ ଧୂମ୍ରପାନ ନିଷେଧ କରିଥିଲେ । ତାଙ୍କ ସମୟରେ ମେହେର କଲେଜର ଷ୍ଟାଫ୍ ଓ ଅଧ୍ୟକ୍ଷ ଏକ ପରିବାର ପରି ଚଳୁଥିଲେ । ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣିମା ଦିନ ସମଗ୍ର କଲେଜକୁ ନେଇ ଏକ ବଣ-ଭୋଜିର ଆୟୋଜନ କରିବା ଡକ୍ଟର ମାନସିଂହଙ୍କ ପରି ଅଧ୍ୟକ୍ଷଙ୍କ ଦ୍ୱାରାହିଁ ସମ୍ଭବ ହୋଇପାରିଥିଲା । ଶିକ୍ଷାନୁଷ୍ଠାନର ଶିକ୍ଷକ, ଛାତ୍ର ଓ କର୍ମଚାରୀମାନଙ୍କୁ ପରସ୍ପରର ନିକଟତର କରାଇବା ଏହି ବଣଭୋଜିର ମୁଖ୍ୟ ଉଦ୍ଦେଶ୍ୟ ଥିଲା ।

କ୍ରମେ ଗଙ୍ଗାଧର ମେହେର କଲେଜରେ ଶିକ୍ଷାର ମାନ ଉପରକୁ ଉଠିଲା ଓ ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ ପ୍ରତିବର୍ଷ ନାମ ରଖିଲା ।

ଏହି କଲେଜରେ ଡକ୍ଟର ମାନସିଂହ ମାତ୍ର ଆଠବର୍ଷ ଅଧ୍ୟକ୍ଷ ହୋଇ ରହିଥିଲେ ଓ କଲେଜର ସର୍ବବିଧ ଉନ୍ନତି ସାଧନ କରି ପାରିଥିଲେ । ସେ ୧୯୫୭ ମସିହାରେ ସମ୍ବଲପୁର ଛାଡ଼ିଲେ ।

ସେ ଆହୁରି କେତେବର୍ଷ କଲେଜର ଅଧ୍ୟକ୍ଷ ଭାବରେ ରହିଥିଲେ ମେହେରଙ୍କ ପୂର୍ଣ୍ଣାବୟବ ଦଣ୍ଡାୟମାନ ମର୍ମର ପ୍ରସ୍ତର ମୂର୍ତ୍ତି ସ୍ଥାପନ, କଲେଜ ଟ୍ରଷ୍ଟ ଫଣ୍ଡର ପୁନର୍ଗଠନ ପ୍ରଭୃତି ଆହୁରି

ଅନେକ କାର୍ଯ୍ୟ କରିପାରିଥାନ୍ତେ ଓ କଲେଜ ଶିକ୍ଷାର ମାନକୁ ଆହୁରି ଉନ୍ନତ ଓ ଆଦର୍ଶସ୍ଥାନୀୟ କରିପାରିଥାନ୍ତେ ।

ଗଙ୍ଗାଧର ମେହେର କଲେଜ ପାଇଁ ସେ ଯାହା କରି ଯାଇଛନ୍ତି, ସେଥିପାଇଁ ପଶ୍ଚିମ ଓଡ଼ିଶାବାସୀମାନେ ତାଙ୍କୁ ଚିରକାଳ ମନେରଖିବେ ।

## ମହାନ୍ ଶିକ୍ଷକ : ମାୟାଧର ମାନସିଂହ

ଏ ଜାତିର ମହାନ୍ ଶିକ୍ଷକ ମାନସିଂହଙ୍କ ତିରୋଧାନ ପରେ ଗୋଟିଏ ଯୁଗର ଅବସାନ ହୋଇଗଲା । ସେ ବହୁକାଳ ଧରି ଏ ଦେଶର ଶିକ୍ଷା ପଦ୍ଧତିରେ ଯୁଗୋପଯୋଗୀ ସଂସ୍କାର ଆଣିବାକୁ ଚେଷ୍ଟା କରୁଥିଲେ । ଶିକ୍ଷା ପଦ୍ଧତିକୁ ନିବୁଜ କୋଠରିରୁ ମୁକ୍ତ କରି, ମୁକ୍ତ ବାୟୁ, ମୁକ୍ତ ଜୀବନ ଦେବାକୁ ସ୍ୱର ଉତ୍ତୋଳନ କରୁଥିଲେ । ସମଗ୍ର ଶିକ୍ଷକ ସମାଜ ତାଙ୍କର କଣ୍ଠକୁ ମନଧ୍ୟାନ ଦେଇ ଶ୍ରବଣ କରୁଥିଲା ଏ ଦେଶ ତାଙ୍କଠାରୁ ଅନେକ କିଛି ଆଶା କରୁଥିଲା । କିନ୍ତୁ କାଳ ସହିଲା ନାହିଁ ।

ଓଡ଼ିଶାର ଜାତୀୟ ଜୀବନ କୁସଂସ୍କାରଚ୍ଛନ୍ନ, ଭ୍ରଷ୍ଟ, ଜରାଜୀର୍ଣ୍ଣ, ପତନମୁଖୀ ଅବସ୍ଥାରେ ଥିଲାବେଳେ ଶିକ୍ଷାର ଗୁଣାତ୍ମକ ମାନ ନିର୍ଣ୍ଣୟ ଆଶା କରିବା ବିଡ଼ମ୍ବନା ମାତ୍ର । ଜାତିର ଏହି ଦୁର୍ଦ୍ଦିନରେ, ହସ୍ତରେ ଉଚ୍ଚଶିକ୍ଷାର ସାର୍ଟିଫିକେଟ୍ ଧରି ଓ ଅନେକ ଅଭିଜ୍ଞତା ସଂଗ୍ରହ କରି, ଆଦର୍ଶ ଶିକ୍ଷକର କର୍ମପ୍ରବାହରେ ଆଶାୟୀ ମାନସିଂହ ଶିକ୍ଷକ ସମାଜରେ ସ୍ନେହ, ପ୍ରେମ, ସୌହାର୍ଦ୍ଦ୍ୟର ଝଙ୍କାର ତୋଳି ଦେଶରେ ଏକ ସୁସ୍ଥ, ଶୁଦ୍ଧପୂତ ସମାଜ ଗଠନ ପାଇଁ ବ୍ରତୀ ହୋଇଥିଲେ । ସେ ବୁଝିଥିଲେ, ଶିକ୍ଷକ ଓ ଗୁରୁ ଏକାଠି ହୋଇ

ଗୋଟିଏ ଶୃଙ୍ଖଳିତ ପରିବେଶରେ ଜ୍ଞାନ-ପ୍ରଦୀପ ଜାଳି ଏ ଦେଶର ଜ୍ଞାନ-ବହୀନ ଅନ୍ଧକାରକୁ ଦୂରୀଭୂତ କରିପାରିବେ । ଏ ଦେଶର ଶିକ୍ଷିତ ଗୁରୁ ଆସନ୍ତାକାଲିର ଶାସନ ଓ ସଂସ୍କୃତିର ନିୟନ୍ତ୍ରକ ହେବେ । ତାର ବଳିଷ୍ଠ ମନ ଏ ସମାଜର ସକଳ ପ୍ରକାର ଦୁର୍ନୀତିର ମୂଳୋତ୍ପାଟନ କରିପାରିବ ।

ଦେଶର ଅଗଣିତ ଶିକ୍ଷକ-ସମାଜକୁ ସେ ଆଶାପ୍ରଦୀ ଚକ୍ଷୁରେ ଚାହିଁ ରହିଥିଲେ । ସେମାନେ ଯେ ଜାତୀୟ ଜୀବନ ଗଠନର ମୂଳାଧାର, ଏକଥା ସେ ବୁଝିପାରିଥିଲେ ।

ସ୍ୱୀୟ ଶିକ୍ଷକତା କାଳରେ ସେ ଗୁରୁ ଓ ସହକର୍ମୀ ସମାଜରେ ଯେଉଁ ବୈପ୍ଳବିକ ପରିବର୍ତ୍ତନର ମନ୍ତ୍ରୋଚ୍ଚାରଣ କଲେ, ତାହା ସେତେବେଳେ ଗଡ଼ଜାତରୁ ଆରମ୍ଭ କରି ମୋଗଲବନ୍ଦୀର ଦ୍ୱାରେ ଦ୍ୱାରେ ଝଂକୃତ ହେଲା । ଗୁରୁ ଓ ଶିକ୍ଷକସମାଜ ମଧ୍ୟରେ ନୂତନ ଆଲୋଡ଼ନ ଖେଳିଗଲା । ପ୍ରଧାନଶିକ୍ଷକ ଓ ସହକାରୀ ଶିକ୍ଷକ, ଶିକ୍ଷକ ଓ ଗୁରୁମାନଙ୍କ ମଧ୍ୟରେ ବିଦ୍ୟମାନ ଥିବା ଅସ୍ୱାଭାବିକ ଦୂରତ୍ୱ ଘୁଞ୍ଚିଗଲା ।

ସେ ଯେଉଁ ସମୟରେ ଶିକ୍ଷା ଓ ଶିକ୍ଷକ ତତ୍ତ୍ୱ ବାଢ଼ି ବସିଲେ, ସେତେବେଳେ ତଥାପି ଇଂରେଜ ଶାସନ ବଳବତ୍ତର ଥାଏ । ତାଙ୍କର ପ୍ରଗାଢ଼ ଚେଷ୍ଟା ଓ ଯୁକ୍ତି ଫଳରେ ପ୍ରାଇମେରୀ ଶିକ୍ଷକଙ୍କ ବେତନ ହାର ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହେଲା ।

ଇଂରେଜ ଶାସକମାନେ ଏ ଦେଶରୁ ବିତାଡ଼ିତ ହେଲେ ସତ; କିନ୍ତୁ ଶିକ୍ଷାବିଭାଗର ଉଚ୍ଚତମ ମହଲରେ ତଥାପି ହାକିମୀ ମନୋଭାବର ଚେର ମାଡ଼ିବସିଲା । ଫାଇଲ ଫିତା ଭିତରେ ଶିକ୍ଷକକୁଳର ଅଭାବ ଅଭିଯୋଗ କରୁଣ ରୋଦନ କଲା । ଶିକ୍ଷା ବିଭାଗ ଯେଉଁମାନଙ୍କ

ଇଙ୍ଗିତରେ ପରିଚାଳିତ ହେଲ, ସେମାନେ ଏହି ବିଭାଗର ସମସ୍ୟା ସଙ୍ଗେ ସୁପରିଚିତ ନ ଥିଲେ । ପଙ୍ଖା ଓ ବିଜୁଳି ଆଲୁଅ ତଳେ ସଂରକ୍ଷିତ ଆସନରେ ବସି ଖାଲି ଆଦେଶ ଦେଲେ । ସେ ଆଦେଶ କାର୍ଯ୍ୟକାରୀ ହେଲେ ଦେଶର ଭବିଷ୍ୟତ କ'ଣ ହେବ, ତାର ବିଚାର ପାଇଁ ସେମାନଙ୍କ ଦୂରଦୃଷ୍ଟି ନ ଥିଲ ।

ଶିକ୍ଷକ ମାନସିଂହ ଏହା ଦେଖି କ୍ଷୁବ୍ଧ ହୋଇ କେବଳ ବସିରହିଲେ ନାହିଁ, ବିଧିମତ ମସିଯୁଦ୍ଧ ଆରମ୍ଭ କରିଦେଲେ । ସରକାରୀ କଳଟରେ ଥାଇ ମଧ୍ୟ ଏହିପରି ନିର୍ଭୀକ ଓ ସ୍ୱାଧୀନ୍ ମତ-ବ୍ୟକ୍ତ କରିବା ମାନସିଂହଙ୍କ ପରି ବ୍ୟକ୍ତିତ୍ୱ-ସମ୍ପନ୍ନ ଶିକ୍ଷାବିତ୍‌ଙ୍କ ପକ୍ଷରେ ସମ୍ଭବ ହୋଇପାରିଥିଲ । ଏହି ସ୍ପଷ୍ଟ ମତବ୍ୟକ୍ତ କରିବା-ଯୋଗୁଁ ସେ ଶିକ୍ଷା ବିଭାଗର ଚକ୍ଷୁଶୂଳ ହେଲେ । ଅନେକ କ୍ଷେତ୍ରରେ ସେ ନିଜର ନ୍ୟାଯ୍ୟ ଦାବୀରୁ ବଞ୍ଚିତ ହେଲେ ମଧ୍ୟ ନିଜ ମୀମାଂସାରୁ ଓହରି ଗଲେ ନାହିଁ ।

ଖୋର୍ଦ୍ଧା ସ୍କୁଲରେ ଛାତ୍ର ଥିବାବେଳେହିଁ ସେ ତାଙ୍କର ଗୋସାଇଁ ବାପ ଅଗାଧୁ ନାୟକଙ୍କ ସଙ୍ଗରେ ଉତ୍କଳ ସମ୍ମିଳନୀ ଦେଖିବାର ସୁଯୋଗ ଲଭ କରିଥିଲେ । ସେଇଠି ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ଇତ୍ୟାଦିଙ୍କୁ ଦେଖି ନିଜେ ନିଜେ ଆଦର୍ଶ ଶିକ୍ଷକ ହେବେ ବୋଲି ସ୍ଥିର କରିଥିଲେ । ଏହି ସିଦ୍ଧାନ୍ତ ତାଙ୍କ ଜୀବନକୁ ବହୁ ଭାବରେ ନିୟନ୍ତ୍ରିତ କରିଥିଲ । ତାଙ୍କ ସାଥିସାଙ୍ଗ-ମାନେ ଡେପୋଟି ଚାକିରୀରେ ମୁତଯ୍ୟନ ହୋଇ ଚାଲିଥିବାବେଳେ ସେ ବାଣପୁର ଚାଲିଗଲେ ଷାଠିଏ ଟଙ୍କାରେ ଶିକ୍ଷକତା କରିବା ପାଇଁ ।

ମାନସିଂହ ଉଚ୍ଚଶିକ୍ଷାର ସାର୍ଟିଫିକେଟ୍ ନେଇ ଆସେଇ ଆସିଥିଲେ ଶିକ୍ଷା ମାଧ୍ୟମରେ ଜାତୀୟ ଜୀବନର ଉନ୍ନତି ବିଧାନ

ପାଇଁ । ତଥାକଥିତ 'ମାର୍କାଧାଙ୍ଗ' ଶିକ୍ଷକର ସ୍ଥାନ ଅଦ୍ଧମିକା ତାଙ୍କର ନ ଥିଲା । ଶିକ୍ଷକସମାଜ ଏ ଜାତିର ଭାବୀ ବଂଶଧରମାନଙ୍କ ଆଗରେ ଆଦର୍ଶ ପୁରୁଷ ରୂପେ ପ୍ରତିଭାତ ହେବା ଯେ ଏକାନ୍ତ ବାଞ୍ଛନୀୟ, ଏକଥା ମହାନ୍ ଶିକ୍ଷକ ମାନସିଂହ ଉତ୍ତମ ଭାବରେ ଉପଲବ୍ଧି କରି-ପାରିଥିଲେ । ତେଣୁ କୋମଳମତି ଛାତ୍ରଛାତ୍ରୀଙ୍କ ମନରେ କଳୁଷତାର ଛାପ ପଡ଼ିବା ପୂର୍ବରୁ ଶିକ୍ଷକର ମହନୀୟ ବ୍ୟକ୍ତିତ୍ୱର ଛାପ ପକାଇବା ପାଇଁ ସେ ଚେଷ୍ଟିତ ଥିଲେ । ସେଥିପାଇଁ ଛାତ୍ରମାନଙ୍କୁ ଶ୍ରଦ୍ଧା ଚକ୍ଷୁରେ ଦେଖିବା ପାଇଁ ଓ ସେମାନଙ୍କ ଆଗରେ ଧୂମ୍ରପାନ ସୁଦ୍ଧା ନ କରିବା ପାଇଁ ସେ ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ଭାବରେ ନୋଟିସ୍ ଜାରି କରିଥିଲେ ।

ମାନସିଂହ ବୁଝିଥିଲେ, ଓଡ଼ିଆ ଜାତିର ଅଧଃପତନର ମୂଳ କାରଣ ହେଲା ସୁଦକ୍ଷ ଓ ଜାତିପ୍ରାଣଗତ ପ୍ରବୀଣ ଶିକ୍ଷକଙ୍କ ଦୁର୍ଲଭତା । ଶିକ୍ଷକତାର କଠିନ ବ୍ରତକୁ ଠିକ୍ ଠିକ୍ ରୂପେ ପାଳନ କରି ଦେଶ ଓ ଜାତିର କଲ୍ୟାଣରେ ନିୟୋଜିତ କଲେ ଏ ଦେଶର ମେରୁଦଣ୍ଡ ଯେ ସଳଖାଇ ଦିଆଯାଇ ପାରିବ, ଏ କଥାରେ ତାଙ୍କର ବିଶ୍ୱାସ ଥିଲା । ତେଣୁ ବୌଦ୍ଧିକ ଓ ବୃତ୍ତିନିକ ସମ୍ଭାବନା ନ ଥାଇ ଶିକ୍ଷକତାକୁ ଏକ ବ୍ୟବସାୟ ରୂପେ ଅବଲମ୍ବନ କରିବାକୁ ସେ ବିରୋଧ କରୁଥିଲେ । ଜୀବନର ବହୁ ସମସ୍ୟା ଓ ଶିକ୍ଷକ ଜୀବନର ବହୁ ବିକ୍ଷୋଭ, ବ୍ୟର୍ଥତା ଓ ତିକ୍ତ ଅନୁଭୂତି ସତ୍ତ୍ୱେ ଗୁରୁହିଁ ବିଦ୍ୟାଳୟ, ଗୁରୁହିଁ ଜାତି, ଗୁରୁହିଁ ଦେଶ ବୋଲି ସେ ସ୍ପଷ୍ଟ କଣ୍ଠରେ ଘୋଷଣା କରିଥିଲେ । ଜଣେ ନିର୍ଭୀକ, ସ୍ପଷ୍ଟବାଦୀ ଶିକ୍ଷାବିତ୍ ଓ ଆଦର୍ଶ ଶିକ୍ଷକ ଭାବରେ ମାନସିଂହ ଏ ଦେଶ ଓ ଜାତିର ଇତିହାସରେ ଅମର ହୋଇ ରହିବେ । ତାଙ୍କର ଆଦର୍ଶ ବ୍ୟକ୍ତିତ୍ୱ, ଆନ୍ତରିକତା, ଦେଶପ୍ରେମ,

ଜ୍ଞାନଗରିମା ଓ ନୈତିକତାର ଦୃଷ୍ଟାନ୍ତର ଶିକ୍ଷକ-ଇତିହାସରେ କ୍ୱଚିତ୍ ଦେଖିବାକୁ ମିଳିଥାଏ ।

ଶିକ୍ଷା ଅନୁଷ୍ଠାନମାନଙ୍କରୁ ସ୍ୱାର୍ଥସଂକୀର୍ଣ୍ଣତା ଓ ବ୍ୟକ୍ତି-କେନ୍ଦ୍ରିକତାର ମନୋଭାବକୁ ସେ ଘୃଣା କରୁଥିଲେ ଓ ଏହାର ବିଲୋପ ସାଧନ ପାଇଁ ସେ ସର୍ବଦା ଚେଷ୍ଟିତ ଥିଲେ । ଶିକ୍ଷାନୁଷ୍ଠାନକୁ ସେ ସ୍ୱୟଂସଂପୂର୍ଣ୍ଣ କରିବା ପାଇଁ ସ୍ୱପ୍ନ ଦେଖୁଥିଲେ ଓ ଇନସ୍-ପେକଟର ଚୃକଣ୍ଠାରୁ ଆରମ୍ଭ କରି ଅଧ୍ୟକ୍ଷ ଚୃକଣ୍ଠ ପର୍ଯ୍ୟନ୍ତ ଏହାକୁ କାର୍ଯ୍ୟକାରୀ କରିବା ନିମନ୍ତେ ଆବଶ୍ୟକୀୟ ପଦକ୍ଷେପମାନ ଗ୍ରହଣ କରିଥିଲେ । ପୁଣି ସିନେଟ୍ ଓ ସିଣ୍ଡିକେଟ୍‌ର ପ୍ରଭାବଶାଳୀ ସଦସ୍ୟ ରୂପେ ଏଥିପାଇଁ ସ୍ୱାଧୀନ ମତ ବ୍ୟକ୍ତ କରିଥିଲେ ।

କେବଳ ଏହି ସ୍ୱାଧୀନ ମତବ୍ୟକ୍ତ କରିବା ଅପରାଧରେ ସେ ଜୀବନର ଚଲାବାଟରେ ବହୁ ବାଧାବନ୍ଧନର ସମ୍ମୁଖୀନ ହୋଇଛନ୍ତି ।

ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ଭାବରେ ଏହି କଲେଜରେ ଉନ୍ନତ ଧରଣର କାଣ୍ଟିନ୍, ସମବାୟ ଷ୍ଟୋର, ଫଳ-ବଗିଚା, ଡାଇରୀ ପ୍ରଭୃତି ସ୍ଥାପନ କରି ସେ ନିଜ ସ୍ୱପ୍ନକୁ କେତେକାଂଶରେ ସଫଳ କରିଥିବା ଓ ଉଚ୍ଚ କର୍ତ୍ତୃପକ୍ଷଙ୍କର ପ୍ରଶଂସାଭାଜନ ହୋଇଥିବା ଜଣାପଡ଼େ । ସୀମା ଆନ୍ଦୋଳନ ବେଳେ ଛାତ୍ରସମାଜର ଅଭିଭାବକ ଓ ସରକାରଙ୍କ ବିଶ୍ୱସ୍ତ କର୍ମଚାରୀ ଭାବରେ ନିଜ କର୍ତ୍ତବ୍ୟ ସମ୍ପାଦନ କରି ଦେଶର ଶ୍ରଦ୍ଧାଭାଜନ ହେବା ପରିବର୍ତ୍ତେ, ତାଙ୍କୁ ଅଧ୍ୟକ୍ଷ ପଦରୁ ଅପସାରିତ କରାଯାଇଥିଲା ।

କେବଳ ବାକ୍ୟ ନୁହେଁ, କର୍ମକ୍ଷେତ୍ରରେ ମଧ୍ୟ ସେ ଧୂରନ୍ଧର ଥିଲେ । ବ୍ୟକ୍ତିତ୍ୱର ପୂର୍ଣ୍ଣବିକାଶ ପାଇଁ ଜୀବନରେ କର୍ମମୁଖର ହେବା ଯେ ନିତାନ୍ତ ପ୍ରୟୋଜନ, ଏହା ସେ ମର୍ମେ ମର୍ମେ ଉପଲବ୍ଧି କରି-

ଯାଉଥିଲେ । ଅବସର ସମୟରେ ସେ ସହକର୍ମୀମାନଙ୍କ ସଖ୍ୟଲାଭ କରିବାକୁ ଆଗ୍ରହ ପ୍ରକାଶ କରୁଥିଲେ । ପୁଣି ଛାତ୍ରମାନଙ୍କ ସଙ୍ଗରେ ସାକ୍ଷାତ-ଆଲୋଚନା କରି ସେମାନଙ୍କ ଭବିଷ୍ୟତ ଜୀବନକୁ ସଫଳ କରିବା ନିମନ୍ତେ ଆବଶ୍ୟକୀୟ ପରାମର୍ଶ ପ୍ରଦାନ କରୁଥିଲେ । ଛାତ୍ରଛାତ୍ରୀମାନଙ୍କ ଜୀବନକୁ ସୁନିୟନ୍ତ୍ରିତ କରିବା ପାଇଁ ସେ ମାକ୍ସିମ୍ ବା ସୂକ୍ତିମାଳା ଲେଖାଇ ପାହାଚ ପାଖରେ ଟଣାଇ ରଖୁଥିଲେ । ବିଭିନ୍ନ ସାଂସ୍କୃତିକ ଉତ୍ସବରେ ନିଜେ ପୁରୋଧା ହୋଇ ଛାତ୍ରମାନଙ୍କୁ ଉତ୍ସାହିତ କରୁଥିଲେ । ସେହିପରି ସହକର୍ମୀମାନଙ୍କ ବ୍ୟକ୍ତିଗତ ଅଭାବ ଅସୁବିଧା କଥା ବୁଝି, ସମସ୍ୟାର ସମାଧାନ ନିମନ୍ତେ ସାଧ୍ୟମତେ ସାହାଯ୍ୟ କରି, ଦୁଃଖବେଳେ ସେମାନଙ୍କ ପ୍ରତି ସମବେଦନା ଜ୍ଞାପନ କରି ମନ ମଧ୍ୟରେ ପାରିବାରିକ ବାତାବରଣ ବଜାୟ ରଖୁଥିଲେ ।

ଆଜି ଛାତ୍ରସମାଜରେ ଯେଉଁ ବିଶୃଙ୍ଖଳା ଦେଖା ଦେଇଛି, ତାହାର ମୂଳରେ ରହିଛି ଛାତ୍ର ଓ ଶିକ୍ଷକମାନଙ୍କ ପ୍ରତି ଅବହେଳା । ଅବହେଳିତ ଛାତ୍ର ଓ ଶିକ୍ଷକସମାଜ ଏହି ଚିରାଚରିତ, ଜରାଜୀର୍ଣ୍ଣ ଶିକ୍ଷାପ୍ରଣାଳୀର ପରିବର୍ତ୍ତନ ଚାହୁଁଛନ୍ତି । ସମସ୍ତେ ଆଶା କରୁଛନ୍ତି, ଶିକ୍ଷାୟତନ ଶୁଦ୍ଧପୂତ ହେଉ । ଶିକ୍ଷକ ଓ ଛାତ୍ରସମାଜ ବୈଦିକ ଗୁରୁଶିଷ୍ୟର ଆଦର୍ଶ ଗ୍ରହଣ କରନ୍ତୁ । ମହାନ୍ ଶିକ୍ଷକ ମାନସିଂହ ତାହାହିଁ ଚାହୁଁଥିଲେ ।

## ମାନସିଂହଙ୍କ ହସ :

ମାନସିଂହଙ୍କ ମୃତ୍ୟୁର ଦଶାହ ଦିନ 'ମାନସିଂହ ସ୍ମରଣିକା' ପ୍ରକାଶ ପାଇଲା । ଏତେ ଅଳ୍ପ ସମୟ ମଧ୍ୟରେ ଏପରି ଏକ ସ୍ମରଣିକା

ପ୍ରକାଶ ପାଇଥିବା ଘଟଣା ଓଡ଼ିଆ ସାହିତ୍ୟରେ ଚହଳ ସୃଷ୍ଟି କଲା । କାରଣ ଏଭଳି ମହାନ୍ ବ୍ୟକ୍ତିତ୍ୱସଂପନ୍ନ ବ୍ୟକ୍ତିଙ୍କର ମହାପ୍ରୟାଣ ଫଳରେ ଲଗାଏତ କିଛିଦିନ ଧରି ଶୋକସଭାର ଆୟୋଜନ କରାଯାଏ । ଜୀବିତ ବନ୍ଧୁ ଓ ଗୁଣଗ୍ରାହୀମାନେ ଦିବଂଗତ ବ୍ୟକ୍ତିଙ୍କର ଗୁଣଗାନ କରନ୍ତି । ଅନେକ ଲୋକ ଶୋକ-ବିହ୍ୱଳ ହୋଇଉଠନ୍ତି । ତାଙ୍କର ଅମର କୀର୍ତ୍ତିକୁ ସ୍ମରଣ କରି ରଖିବା ନିମନ୍ତେ ସ୍ମରଣିକା ପ୍ରସ୍ତୁତିର ଆୟୋଜନ କରାଯାଏ । କେତେକ ସ୍ମରଣିକା ବର୍ଷକ ପରେ ପ୍ରକାଶିତ ହୁଏ, ଆଉ କେତେକ ନିର୍ଦ୍ଧାରିତ ସ୍ମରଣିକା ମୋଟେ ପ୍ରକାଶ ପାଇପାରେ ନାହିଁ । ଉଦ୍ୟୋକ୍ତାମାନେ ଅନିବାର୍ଯ୍ୟ କାରଣର କୈଫିୟତ୍ ଦେଇ, ଆଉ କେହି କେହି ଉପଯୁକ୍ତ ଲେଖା ପାଇ-ପାରିଲେ ନାହିଁ ବୋଲି ପ୍ରକାଶ କରି ସ୍ମରଣିକା ସଂକଳନ ସିଦ୍ଧାନ୍ତରୁ ଓହରି ଆସନ୍ତି ।

କିନ୍ତୁ ମାନସିଂହ ସ୍ମରଣିକା ଏତେ ଶୀଘ୍ର ପ୍ରକାଶ ପାଇବାର ଏକମାତ୍ର କାରଣ ହେଲା, ଏ ଦେଶ ଓ ଜାତିପ୍ରାଣରେ ଆଲୋଡ଼ନ ସୃଷ୍ଟି କରିଥିବା 'ମାଟିଆଧରି' ଶ୍ରଦ୍ଧା ଓ ସମ୍ମାନ । ଲେଖା ବା ଅର୍ଥର ଅଭାବ ରହିଲା ନାହିଁ । ସ୍କୁଲ ଶିକ୍ଷକଠାରୁ ଇଂଜିନିୟର ପର୍ଯ୍ୟନ୍ତ, ଗୃହସ୍ଥଠାରୁ ରାଜନୈତିକ ନେତା ପର୍ଯ୍ୟନ୍ତ ; ପୁଣି କବି, ଲେଖକ, ପ୍ରାବନ୍ଧିକ, ସମାଲୋଚକ ସମସ୍ତେ ମାନସିଂହଙ୍କ ବିୟୋଗରେ ଶୋକାଭିଭୂତ ହୋଇ ତାଙ୍କର ଗୁଣକୀର୍ତ୍ତନ କଲେ ।

ଲକ୍ଷ୍ୟ କରିବାର କଥା, ଉକ୍ତ ସଂକଳନରେ ମାନସିଂହଙ୍କର ଘନିଷ୍ଠ ବନ୍ଧୁ ଓ ଏକଦା କଟୁ ସମାଲୋଚକ ଉଭୟଶ୍ରେଣୀର ଲେଖକମାନଙ୍କର ଲେଖା ପ୍ରକାଶ ପାଇଲା ।

ପ୍ରବନ୍ଧମାନ ପାଠ କରିବା ପରେ ମନେହେଲା, ମାନସିଂହଙ୍କର କେହି ହେଲେ ଶତ୍ରୁ ନ ଥିଲେ, କେହିହେଲେ କଟୁ ସମାଲୋଚକ

ନ ଥିଲେ । ସରକାରୀ ଓ ବେସରକାରୀ କ୍ଷେତ୍ରରେ ତାଙ୍କର ସମସ୍ତ ହିତାକାଂକ୍ଷୀ ବନ୍ଧୁ ଥିଲେ ।

ବୋଧହୁଏ, ଏସବୁ ମୂଳରେ ଡକ୍ଟର ମାନସିଂହଙ୍କ ସର୍ବବ୍ୟାପୀ ପ୍ରଭାବ କାମ କରିଥିଲା ।

ଡକ୍ଟର ମାନସିଂହ ଥିଲେ ଏ ଦେଶର ସାହିତ୍ୟ ଓ ସଂସ୍କୃତିର ଚଳମାନ ପ୍ରତୀକ । ସମସ୍ତଙ୍କ ପାଇଁ ତାଙ୍କ ଅନ୍ତରରେ ସ୍ନେହ ଓ ଶ୍ରଦ୍ଧା ଥିଲା । ଅଚିହ୍ନା ମଣିଷକୁ ସେ ଅତି ଅଳ୍ପ ସମୟ ମଧ୍ୟରେ ଆପଣାର କରିପାରୁଥିଲେ ।

ସବୁଠୁ ଆକର୍ଷଣୀୟ ଥିଲା ମାନସିଂହଙ୍କ ମୁଖନିଃସୃତ ଖୋଲା ଖିଲ ଖିଲ ହସ । ଅନାବିଳ, ଅକୃତ୍ରିମ, ନିଚ୍ଛଳ ହସ । ସେହି ହସ ନିସ୍ତବ୍ଧ, ନିସ୍ତବ୍ଧ ପରିବେଶକୁ ଜୀବନ୍ତ କରିଦେଉଥିଲା । ସେ ହସ ଅପରିଚିତକୁ ଆତ୍ମୀୟ କରିପକାଉଥିଲା । ସେ ଯୁଆଡ଼େ ଯାଉଥିଲେ, ଆନ୍ତରିକ, ଅନାବିଳ ହସର ବୁଜୁଳା ବାନ୍ଧି ଯାଉଥିଲେ । ଯେଉଁଠି ବସୁଥିଲେ, ଛିଡ଼ା ହେଉଥିଲେ, କଥା କହୁଥିଲେ, ସେହି ଆନ୍ତରିକ ହସରୁ କିଛି ସେ ଫାଙ୍କ ଦେଉଥିଲେ ! ସେହି ହସ-ଫୁଲର-ପାଖୁଡ଼ା ପରିବେଶକୁ ବର୍ଣ୍ଣାଢ଼୍ୟ ଓ ସୁରଭିତ କରି ରଖୁଥିଲା । ସେ ହସ ସ୍ମୃତି ହୋଇ ମାନସପଟରେ ଲିଖି ରହିଥିଲା ।

ସ୍ୱରାଜ୍ୟର ସମ୍ପାଦକ ଥିଲାବେଳେ ସେ ଭୁବନେଶ୍ୱରରେ ଅବସ୍ଥାନ କରୁଥିଲେ । ତାଙ୍କ ସଙ୍ଗରେ ତାଙ୍କ ବସାଘରେ ଓ ଅଫିସ୍‌ରେ ଦେଖା ହୋଇଛି । ସେ ହସର ସ୍ମୃତି ମଉଳିବାର ନୁହେଁ ।

ତାଙ୍କ ମୁଖର ହସ କଥା ସ୍ମରଣ କରି ଯଶସ୍ୱୀ ଔପନ୍ୟାସିକ ଶ୍ରୀ ଗୋପିନାଥ ମହାନ୍ତି କହନ୍ତି, "ତାଙ୍କ ଲେଖାପରି ତାଙ୍କ କଥାଭାଷା ଓ ବ୍ୟବହାର ସବୁବେଳେ ମାର୍ଜିତ । ବଂଶଗତିରେ ସଂସ୍କୃତିର ଛାପ

ଥିଲା, ବ୍ୟବହାରରେ ମଧୁର ସୌଜନ୍ୟ ଥିଲା । ମଧୁର କଥା, ବେଳେ ବେଳେ ପରିହାସରେ ଉଜ୍ଜ୍ୱଳ, ହୋ ହୋ ଫାଟଜା ହସ । × ×"

ବିଖ୍ୟାତ ଗାଳ୍ପିକ ଶ୍ରୀ ରାଜକିଶୋର ରାୟ ତାଙ୍କ ହସକୁ ଲକ୍ଷ୍ୟ କରି ଲେଖିଛନ୍ତି, "ସେ ହସ ଅଧରରୁ ଆସେ ନାହିଁ । ସେ ହସ ନିର୍ଝରିଣୀ ଆଖିପତାକୁ, ଲଲାଟକୁ । ସର୍ବ ଶରୀର ଦୋହଲି ଦୋଳେ, ମାନବିକ, ପ୍ରୀତିପୂରିତ ଓ ବିଶ୍ୱ-ଉଲ୍ଲାସିକ ସେଇ ଠୋ···ଠୋ ହସ ।"

କବି ସୀତାକାନ୍ତ ମହାପାତ୍ର ମାୟାଧର ମାନସିଂହଙ୍କ ହସକୁ ଖୋଜି ହୋଇ କହନ୍ତି, "ହଠାତ୍ ବି ମନେ ହେଉଥିଲା, ସେ ମାରିବଟା ଭାଙ୍ଗିଯାନ୍ତା, ଯଦି ସେ ତାଙ୍କର ସେଇ ପ୍ରିୟ ଡ୍ରେସିଂ ଗାଉନ୍‌ଟି ପିନ୍ଧି ତାଙ୍କରି ସେଇ ପଢ଼ାଘରେ ହଠାତ୍ ହସିଉଠନ୍ତେ । ସେଇ ହସ, ଯାହା ଜହ୍ନ ଆଲୁଅରେ ଚିଲିକା ପରି ବିଗଳିତ, ଥଇକୂଳହୀନ, ଆକାଶଛୁଆଁ, ଛଳଛଳ, ଅଖିଳା, ଖୋଲା । × ×"

ଅଧ୍ୟାପିକା ମନୋରମା ମହାପାତ୍ର କବି ମାନସିଂହଙ୍କ ସ୍ମୃତି ଭିତରେ ନିଜ ଲେଖନୀକୁ ହଜାଇ ଦେଇ ସାଉଁଟି ଆଣିଛନ୍ତି ତାଙ୍କ ହସକୁ । ସେ କହନ୍ତି, "୧୯୫୮ ମସିହାର ଘଟଣା । ଏହି ସୌମ୍ୟ-କାନ୍ତି ବରିଷ୍ଠ କବିଙ୍କୁ ପ୍ରଥମ ଥର ପାଇଁ ଏତେ ନିକଟରୁ ଦର୍ଶନ କରିବାର ସୁଯୋଗ ପାଇଲି । ଝୋରିଆସାହିର ସାମ୍ନା ବାରଣ୍ଡାରେ ସେ ବସିଥିଲେ । ସମ୍ମୁଖରେ ବହିସ୍ତୂପ, ଅଧରରେ ସେହି ଅପୂର୍ବ ହାସ୍ୟରେଖା—ତୁଳନା ନାହିଁ । × ×"

ଅଧ୍ୟାପକ ବେଣୁଧର ରାଉତ ମାନସିଂହଙ୍କ ହସକୁ 'ଅଖାଳିଆ ଧ୍ୱନିପୂର୍ଣ୍ଣ ହସ' ନାମରେ ନାମିତ କରିଛନ୍ତି ।

ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ ତାଙ୍କର ବଦଗ୍ଧ ସ୍ମୃତି-ପ୍ରବନ୍ଧ 'ଗୁଣ ସୁମର ହୁଅନ୍ତ ବକଳ'ରେ ଉଚ୍ଛ୍ୱାସର ବନ୍ୟା ଛୁଟାଇ ସ୍ୱର୍ଗତଃ ମାନସିଂହଙ୍କୁ ସମ୍ବୋଧନ କରି କହନ୍ତି, "ଆପଣ ଯେତେବେଳେ ଅକାରଣ ଉଚ୍ଛ୍ୱସିତ ହୋଇ ହୋ ହୋ ହସିଉଠନ୍ତି, ହଶନ୍ତି ଅବୋଧ ଶିଶୁଟିଏ ଭଳି ।"

ସ୍ୱର୍ଗୀୟ ପ୍ରଫେସର ଧଳ, ମାନସିଂହଙ୍କ ହସ କଥା ସ୍ମରଣ କରି ଲେଖିଥିଲେ, "କଥା କଥାକେ ହସ । ହସିବେ ଯଦି ଘର ଭାଙ୍ଗି ପକାଇବେ । ହସ, ମନଖୋଲା ହସ, ସରଳ-ତରଳ କବି-ହୃଦୟର ହସ । ହସି ହସି ବେଳେ ବେଳେ ଆଖିରୁ ତାଙ୍କର ଲୁହ ଖସିପଡ଼େ ।"

ମନରେ ପ୍ରଶ୍ନ ଆସେ, ଜୀବନର ଏତେ ସମସ୍ୟା, ଏତେ ବାଦବିସମ୍ବାଦ, ଏତେ ଜଞ୍ଜାଳ ଭିତରେ ଏମିତି ମନଖୋଲା, ପଖଳା ହସ ସେ ହସିପାରୁଥିଲେ କେମିତି ? କିଏ ତାଙ୍କ ଅଧରରେ ଏଭଳି ନିର୍ମଳ ହସ ଖେଳାଇଦେଉଥିଲେ ? କେବଳ ସରଳ, ନିଷ୍କପଟ, ଦରଦୀ ମଣିଷ ଏମିତି ହସିପାରେ ।

ପୁଣି କୁହାଯାଏ, ହସ ଆୟୁଷ ବଢ଼ାଏ !

ଏତେ ହସ, ଏତେ ସୁନ୍ଦର ହସର ଅଧିକାରୀ ଏତେ ଶୀଘ୍ର ଏ ପୃଥିବୀକୁ ଛାଡ଼ି ଚାଲିଗଲେ କେମିତି ?

ସବୁ ପ୍ରଶ୍ନ ପରି ମାୟାଧରଙ୍କ ହସ ମଧ୍ୟ ଏକ ପ୍ରଶ୍ନ ହୋଇ ରହିଗଲା । ସମାଧାନ ନାହିଁ । ସମାଧାନ ହୋଇପାରିବ ନାହିଁ ।

---




# ସାହିତ୍ୟିକ ମାନସିଂହ

## : ସାହିତ୍ୟିକ ମାନସିଂହଙ୍କ ବ୍ୟକ୍ତିତ୍ୱ :

ସାହିତ୍ୟିକ ମାନସିଂହଙ୍କୁ ସ୍ମରଣ କଲେ ମନେପଡ଼େ ତିନୋଟି ବିଷୟ । ପ୍ରଥମତଃ ତାଙ୍କର ନିରବଚ୍ଛିନ୍ନ ସାହିତ୍ୟ ସାଧନା । ଦ୍ୱିତୀୟରେ, ସବୁ ବିଷୟରେ ତାଙ୍କର ସ୍ୱତନ୍ତ୍ର ବିଚାରଧାରା ଏବଂ ସର୍ବଶେଷରେ ତାଙ୍କର ସଂସ୍କୃତି-ସଚେତନ ଓ ଜାତୀୟତାବାଦୀ ବ୍ୟକ୍ତିତ୍ୱ ।

**ନିରବଚ୍ଛିନ୍ନ ସାହିତ୍ୟ ସାଧନା :**

ସାହିତ୍ୟିକ ମାନସିଂହ ସ୍ୱଭାବତଃ କବି ଥିଲେ । 'ଧୂପ' କବିତାଗ୍ରନ୍ଥ ତାଙ୍କ କବିଜୀବନର ଶ୍ରେଷ୍ଠତମ ନିଦର୍ଶନ । ସେହି କବିତାବଳୀରେ ଯୌବନ, ପ୍ରେମ ଓ ସୌନ୍ଦର୍ଯ୍ୟର ବନ୍ଦନା କରାଯାଇଛି । କବିତାଗୁଡ଼ିକ ସରସ, ସବୁଜ ଓ ସୁନ୍ଦର । ଏଥିରେ ଆନ୍ତରିକତାର ନିବିଡ଼ ସ୍ପର୍ଶ ଓ ଗୀତିମୟତାକୁ ଉପଲବ୍ଧି କରିହୁଏ । 'ଧୂପ'ରେ ଯୌବନର କବି ମାନସିଂହ ସହାସ୍ୟ ବଦନରେ ଦଣ୍ଡାୟମାନ ।

'ଧୂପ' ମାନସିଂହଙ୍କର ବ୍ୟକ୍ତିଗତ ହୃଦୟର ଇତିହାସ । ସେଥିପାଇଁ ତାହା ପାଠକପାଠିକାଙ୍କ ମନକୁ ଏତେ ନିବିଡ଼ ଭାବରେ ସ୍ପର୍ଶ କରିଥାଏ ।

ଏହାପରେ ଦେଶଭକ୍ତିର କବିତା ଗୁଡ଼ିକ ସେ ଆଧୁନିକ ଢଙ୍ଗମାନରେ କବିତା ସବୁ ରଚନା କଲେ । 'ଧୂପ' ପଢ଼ିସାରିବା ପରେ କବିଙ୍କର 'ମାଟିବାଣୀ' ଓ 'କୃଷ୍ଣ' ଇତ୍ୟାଦି ପାଠ କଲେ ମନ ଭିତରେ ପ୍ରଶ୍ନ ଉଠେ, ଏ ସମସ୍ତ କବିତାର ଲେଖକ କ'ଣ ସେହି ଗୋଟିଏ ମାନସିଂହ ? 'ମାଟିବାଣୀ' କବିତାଗୁଚ୍ଛର କାବ୍ୟିକ ଆବେଦନ, କୃଷ୍ଣ ସନେଟ୍ ଶତକର ପରିପକ୍ୱ ଜୀବନ ଦର୍ଶନ 'ଧୂପ' ଗ୍ରନ୍ଥରେ ଅନୁପସ୍ଥିତ ।

ତେଣୁ 'ଧୂପ'ର ସର୍ବଶେଷ ଭୂମିକାରେ କବି ଲେଖିଲେ, "ଯୌବନର ରଙ୍ଗୀନ୍ ଚଷମାରେ ଯେଉଁ ଜଗତ ସ୍ୱପ୍ନସୁଖ ପରି ପ୍ରଫୁଲ୍ଲିତ ହେଉଥିଲା, ଆଜି ତାହା ରୁକ୍ଷ, ନୀରସ ଓ ହାହାକାରମୟ । ଏ କବିତାଗୁଡ଼ିକର ବର୍ତ୍ତମାନ ସଂସ୍କରଣ ପାଇଁ ପ୍ରୁଫ୍ ପଢ଼ିଲାବେଳେ ମନେହେଉଥିଲା, ସେଗୁଡ଼ିକ ଯେପରି ଅନ୍ୟ କେଉଁ କବି ଦ୍ୱାରା ରଚିତ । ତଥାପି ଏକ ହୃଦୟର ଇତିହାସ ଭାବରେ ଏସବୁର ମୂଲ୍ୟ ଥାଇପାରେ ।"

ଏଠାରେ କବି ସ୍ମରଣ କରାଇଦେଲେ ଯେ, ଜୀବନ ଏକ ରଙ୍ଗୀନ ସ୍ୱପ୍ନ ନୁହେଁ, କମ୍ୱା ଗୋଲାପର ଶଯ୍ୟା ନୁହେଁ । କେତେ ଆଶା-ନିରାଶା, ଭଙ୍ଗାଗଢ଼ାର ଏ ଦୁନିଆ । ଜୀବନ, ଯୌବନ, ସ୍ୱପ୍ନ ସବୁକିଛି ନଶ୍ୱର । ଜୀଇଁବାକୁ ହେଲେ ସଂଗ୍ରାମ କରିବାକୁ ହୁଏ । କ୍ଷତ-ବିକ୍ଷତ ହେବାକୁ ହୁଏ । ପଡ଼ିଉଠି ଧାଇଁବାକୁ ହୁଏ ।

କବି ମାନସିଂହଙ୍କ ଆଦ୍ୟ ସୃଷ୍ଟି 'ଧୂପ' ହେଲେ ମଧ୍ୟ ସେ ଧୂପ-ସ୍ତର ଅତିକ୍ରମ କରି, ନାଟକ-ନାଟିକା, କାବ୍ୟ, ଆଲୋଚନା-ସମାଲୋଚନାଠାରୁ ଆରମ୍ଭ କରି ଶ୍ରୀମଦ୍ ଭଗବଦ୍ ଗୀତାର ଭାଷ୍ୟ ପର୍ଯ୍ୟନ୍ତ ରଚନା କରିଅଛନ୍ତି । ସମସାମୟିକ ସାମାଜିକ, ରାଜନୈତିକ

ଓ ସାହିତ୍ୟିକ ଅବସ୍ଥା ବିଷୟରେ, ଦର୍ଶନତତ୍ତ୍ୱ ଉପରେ ଓ ଆହୁରି ଅନେକ ସାଂପ୍ରତିକ ବିଷୟ ଉପରେ ସେ ଲେଖନୀ ଚାଳନା କୌଣସି ଗୋଟିଏ ଶୀର୍ଷକର ସୀମା ଭିତରେ ତାଙ୍କୁ ନେଇ ଆଲୋଚନା କରିବା ଅସମ୍ଭବ ।

କଲେଜରେ ପାଦ ଦେଲାବେଳେ ସେ କବି ରୂପରେ ପରିଚିତ ହୋଇ ସାରିଥିଲେ । ଏହାପରେ ତାଙ୍କ କଲମରୁ କାଳି ଶୁଖି ନାହିଁ । ଜୀବନର ଶେଷ ସମୟ ପର୍ଯ୍ୟନ୍ତ ସେ ଲେଖାପଢ଼ାରେ ନିଜକୁ ବୁଡ଼ାଇ ରଖିଥିଲେ ।

କବିତା, ନାଟକ, କାବ୍ୟ, ପ୍ରବନ୍ଧ, ଆଲୋଚନା, ଭ୍ରମଣ-ବୃତ୍ତାନ୍ତ, ପାଠ୍ୟପୁସ୍ତକ, ଶିଶୁସାହିତ୍ୟ ଓ ଇଂରାଜୀ ପୁସ୍ତକ ଇତ୍ୟାଦି ବିଭିନ୍ନ ବିଭାଗରେ ତାଙ୍କ ରଚନାବଳୀ ସାହିତ୍ୟକୁ ସମୃଦ୍ଧ ଓ ଋଦ୍ଧିମନ୍ତ କରିଛି ।

ମାନସିଂହ ଜୀବନସାରା ଲେଖିଛନ୍ତି । ଅବସର ନାହିଁ । ବିଶ୍ରାମ ନାହିଁ । କାହାରି ପ୍ରତି ଭ୍ରୂକ୍ଷେପ ନାହିଁ । ନିଜ ମନକୁ ଯାହା ଆସିଲା ଲେଖିଲେ ଓ ଖାଲି ଲେଖିଗଲେ । ଏ କାର୍ଯ୍ୟପାଇଁ କାହାରି ଉପଦେଶ ବା ପରାମର୍ଶର ଆବଶ୍ୟକତା ନାହିଁ ।

ଏଥିପାଇଁ ମାନସିଂହ ହେଲେ ଓଡ଼ିଆ ସାହିତ୍ୟର 'ଧାବିଶ୍ରାବଣ' । ଝରୁଛି ତ ଝରୁଛି । ଅବିଶ୍ରାନ୍ତ, ଅବିରାମ ।

ଏଭଳି ଏକାଗ୍ରସାଧନା ଓ ନିଷ୍ଠା କେବଳ ଓଡ଼ିଆ ସାହିତ୍ୟ ନୁହେଁ, ଭାରତୀୟ ସାହିତ୍ୟକ୍ଷେତ୍ରରେ ମଧ୍ୟ ଦୁର୍ଲଭ ।

## ସ୍ୱତନ୍ତ୍ର ବିଚାରଧାରା :

ମାନସିଂହ କାବ୍ୟ-କବିତାଠାରୁ ଆରମ୍ଭ କରି ପ୍ରବନ୍ଧ ଓ ଆଲୋଚନା ପର୍ଯ୍ୟନ୍ତ ପ୍ରତି ବିଭାଗରେ 'ସ୍ୱତନ୍ତ୍ର ବିଚାରଧାରା'ର ନିଜସ୍ୱ ମୋହର ମାରି ଦେଇଛନ୍ତି ।

ଶିକ୍ଷାପଦ୍ଧତି ସମ୍ପର୍କରେ ତାଙ୍କର ସ୍ୱତନ୍ତ୍ର ଦୃଷ୍ଟିକୋଣ ଥିଲା । ସେହି ଦୃଷ୍ଟିକୋଣକୁ ସେ ଦରକାଶ ଢଙ୍ଗରେ ଅଧିଷ୍ଠିତ ହୋଇ ମଧ୍ୟ ଅତି ବଳିଷ୍ଠ ଓ ନିର୍ଭୀକ ଭାବରେ ପ୍ରକାଶ କରିଛନ୍ତି ।

ଏହା ତାଙ୍କର ଆତ୍ମ-ବିଶ୍ୱାସ ଓ ସାହସର ଉଦାହରଣ ରୂପେ ବିବେଚିତ ହୋଇଥାଏ ।

ଏହି ନିଃସଙ୍କୋଚ ବିଗ୍ରହଧାରିଙ୍କୁ କେନ୍ଦ୍ରକରି ଓଡ଼ିଶାର ଗୁଣୀ ଓ ପଣ୍ଡିତ ମହଲରେ ଅନେକ ବାକ୍‌ବିତଣ୍ଡା, ଯୁକ୍ତିତର୍କର ଅବ-ତାରଣା ଘଟୁଥିଲା । ସେ ଏଥିପାଇଁ ବହୁ କ୍ଷେତ୍ରରେ ବହୁ ବ୍ୟକ୍ତିଙ୍କର ଅପ୍ରିୟଭାଜନ ହେଉଥିଲେ । କିନ୍ତୁ ସେଥିପାଇଁ ତାଙ୍କର ଖାତିର ନ ଥିଲା । ସେ ଶସ୍ତା ବାହାବା, ଉପାଧି ବା ପ୍ରଶଂସାପତ୍ର ପାଇବାକୁ ଚାହୁଁ ନ ଥିଲେ ।

ଅପ୍ରିୟ ହେବ ବୋଲି ବିପଦ ରହିଛି ବୋଲି ଜାଣି ସୁଦ୍ଧା ସେ ଯାହା ଯଥାର୍ଥ ଭାବୁଥିଲେ, ତାକୁ ମୌଖିକ ଓ ଲିଖିତ ଆକାରରେ ପ୍ରକାଶ କରିପକାଉଥିଲେ ।

'ଓଡ଼ିଆ ସାହିତ୍ୟର ଇତିହାସ'ରେ ଓଡ଼ିଆ ସାହିତ୍ୟର ଏକ ଜୀବନ୍ତ ଚିତ୍ର ଦେବାରେ ସେ ସଫଳତା ହାସଲ କରିଛନ୍ତି । କିନ୍ତୁ ସେହି ଗ୍ରନ୍ଥକୁ କେନ୍ଦ୍ର କରି ଓଡ଼ିଶାରେ ଯେଉଁ ଝଡ଼ଝଞ୍ଜା ସୃଷ୍ଟି ହେଲା, ତାହା ପ୍ରତ୍ୟେକ ସାହିତ୍ୟିକର ସବୁଦିନ ପାଇଁ ମନେ ରହିବ । ଏଥିପାଇଁ ତାଙ୍କୁ ବ୍ୟକ୍ତିଗତ ଭାବରେ ଅନେକ ନିର୍ଯ୍ୟାତନା ଭୋଗ କରିବାକୁ ପଡ଼ିଥିଲା । ତଥାପି ଶେଷ ପର୍ଯ୍ୟନ୍ତ ସେ ଦୃଢ଼ ହୋଇ ଛିଡ଼ା ହୋଇଥିଲେ ।

ସିନେଟ୍ ଓ ସିଣ୍ଡିକେଟ୍ ସଦସ୍ୟ ଭାବରେ ସେ ଶିକ୍ଷାଷ୍ଠାନର ପ୍ରଚଳିତ ଶିକ୍ଷାପଦ୍ଧତି ଭିତରେ ରହିଥିବା ଗତାନୁଗତିକତା ଓ

ଯାନ୍ତ୍ରିକ ନିୟମକାନୁନ୍ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ମାର୍କ ଓ ଶ୍ରେଣୀବିଭାଗ, ବେସିକ୍ ଶିକ୍ଷା, ତିନିବର୍ଷିଆ ଡିଗ୍ରୀ ପାଠ୍ୟକ୍ରମ, ପାଠ୍ୟପୁସ୍ତକର ମାରପେଞ୍ଚ ନୀତି, ସାହିତ୍ୟ ଏକାଡେମୀର ସ୍ଥାଣୁତା, ଶିକ୍ଷା ବିଭାଗରେ ଅନଭିଜ୍ଞ ବ୍ୟକ୍ତିମାନଙ୍କର ଅନୁପ୍ରବେଶକୁ ସେ ବାରମ୍ବାର ତୀବ୍ର ପ୍ରତିରୋଧ କରି ଜୀବନସଂଗ୍ରାମରେ ବହୁବାର କ୍ଷତବିକ୍ଷତ ହୋଇଛନ୍ତି । କିନ୍ତୁ କେବେହେଲେ ମତ ପରିବର୍ତ୍ତନ କରି ନାହାନ୍ତି । ଏହାକୁ ଲକ୍ଷ୍ୟ କରି କବି ସଚ୍ଚିଦାନନ୍ଦ ବିଯୁତଗାୟ ମାନସିଂହ ସ୍ମରଣିକାରେ ଲେଖିଛନ୍ତି, "ବହୁ ତଥାକଥିତ ଅଧ୍ୟାପକୀ-ଅଫିସରୀ-ମାତବର୍‌ମାନଙ୍କ ମାରପେଞ୍ଚରେ ଓଡ଼ିଆ ଭାଷା ଓ ଓଡ଼ିଆ ସାହିତ୍ୟ କଣ୍ଠାଗତ ହେବାର ଉପକ୍ରମ ଦେଖି ସେ ଦୁଇଟି ସହ୍ୟ କରିପାରି ନାହାନ୍ତି । ଏହି ତଥାକଥିତ ଅଧ୍ୟାପକ-ଅଫିସର ସମାଲୋଚକମାନେ ନିଜର ପଲ୍ଲିବଗ୍ରାହିତା ଓ ନିଜର ନଗଣ୍ୟ ସାହିତ୍ୟ କର୍ମ ସତ୍ତ୍ୱେ ଓଡ଼ିଆ ସାହିତ୍ୟର ମାରଫତଦାର କିମ୍ବା ଋତ୍ୱିକ ହୋଇ ବସିଛନ୍ତି । ଗୋଷ୍ଠୀଚାରଣ ଏବଂ ପ୍ରିୟାପ୍ରୀତିତୋଷଣ ଆଦି ନାନା କାରସାଦିରେ ଏମାନେ ସିଦ୍ଧହସ୍ତ । × × × ଡଃ ମାନସିଂହଙ୍କ କଟୂକ୍ତି ବେଳେ ବେଳେ ଆପେକ୍ଷିକ ମନେହେଲେ ମଧ୍ୟ ଏହା ଯେ ଅପାତ୍ରରେ ପଡ଼ି ନାହିଁ, ତାହା ଆଜି ପ୍ରତ୍ୟେକେ ଅନୁଭବ କରୁଛନ୍ତି ।"

ତାଙ୍କର ବସ୍ତୁଜଗତ ଓ ଭାବଜଗତ ସମାନ୍ତରାଳ ଭାବରେ ଗ୍ଲୁଲିଥିଲା । ସେ ଯେମିତି ଏକାଧାରରେ ଥିଲେ ଜଣେ ସାର୍ଥକ କବି, ପ୍ରାବନ୍ଧିକ, ସମାଲୋଚକ ସେହିପରି ଥିଲେ ଜଣେ ସଫଳ ଗୃହସ୍ଥ । ତାଙ୍କର ପୁତ୍ରମାନେ ଉଚ୍ଚଶିକ୍ଷିତ ତଥା ବିଖ୍ୟାତ । ଏଥିରେ ଶିକ୍ଷିତ ଓ ଦୀକ୍ଷିତ ମାନସିଂହଙ୍କ ସଫଳ ରୂପ ଦେଖିବାକୁ ମିଳିଥାଏ ।

## ସଂସ୍କୃତି-ସଚେତନ ଜାତୀୟତାବାଦୀ ବ୍ୟକ୍ତିତ୍ୱ :

ମାୟାଧରଙ୍କ ବ୍ୟକ୍ତିତ୍ୱ ଅତୀବ ମହତ୍ତ୍ୱମୟ । ସେଥିରେ ସଂସ୍କୃତି ଓ ଜାତୀୟତାର ସ୍ପର୍ଶ ଥିଲା । ତାଙ୍କ ବ୍ୟବହାରରେ ସୁମଧୁର ସୌଜନ୍ୟ ଥିଲା । ସ୍ନେହ, ଶ୍ରଦ୍ଧା, ସହାନୁଭୂତିରେ ଆଖି ଦୁଇଟି ଝଲସି ଉଠୁଥିଲା । ବୟସରେ ସାନଠାରୁ ଆରମ୍ଭ କରି ବୟସରେ ବଡ଼ ସମସ୍ତଙ୍କ ସାଙ୍ଗରେ ସେ ସମ୍ପର୍କ ସ୍ଥାପନ କରିଥିଲେ ।

ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ସେ ପ୍ରଗାଢ଼ ଭାବରେ ଭଲ-ପାଉଥିଲେ । ତେଣୁ ମୃତ୍ୟୁ ପର୍ଯ୍ୟନ୍ତ ତାକୁ ଜାବୁଡ଼ି ଧରିଥିଲେ ।

ସଚ୍ଚି ରାଉତରାୟଙ୍କ ଭାଷାରେ, "× × ସେ ଯେପରି ଏଠାର ପ୍ରାଚୀନତମ ଆଦିବାସୀ—ଆଜି ଆମେ ସମସ୍ତେ ଯେପରି କେଉଁ ପରବର୍ତ୍ତୀ ପର୍ଯ୍ୟାୟର ଲୋକ ଏଠିକି ଆସି ଆସ୍ଥାନ ଜମାଇଛୁଁ । ପୈତୃକ ଭିଟାମାଟିକୁ ଶେଷ ପର୍ଯ୍ୟନ୍ତ ଏପରି ଜାବୁଡ଼ି ଧରି ପଡ଼ି ରହିବାର ଧୈର୍ଯ୍ୟ ଓ ପ୍ରବୃତ୍ତିରେ ସେ ଥିଲେ ସତରେ ଅଟଳ ଓ ଅପରିବର୍ତ୍ତିମୟ ।"

ସେ ଅତୀତ ଜୀବନର ପରଂପରା ଓ ସଂସ୍କୃତିକୁ ଖୁବ୍ ଭଲ-ପାଉଥିଲେ ।

ତାଙ୍କ ସାଧବଝିଅ, ଜେମା, ମାଳୁଣୀ, ରାଧା ପ୍ରଭୃତି ଅସଂଖ୍ୟ ସୁନ୍ଦର କବିତାରେ ସେ ତାଙ୍କର ମନଗଢ଼ା ଚିତ୍ର ପ୍ରତିମାମାନଙ୍କୁ ଉପସ୍ଥାପନ କରି ଏକ କଳ୍ପନାମୟ ସୁନ୍ଦର ଜଗତର ଚିତ୍ର ଦେଇଛନ୍ତି ।

ଏଇ ଦେଶର କଳା, ସ୍ଥାପତ୍ୟ ଓ ସଂସ୍କୃତିର ବୈଶିଷ୍ଟ୍ୟ ସଂପର୍କରେ ସେ ଗର୍ବ ଅନୁଭବ କରୁଥିଲେ ଓ ଏହାକୁ ଦେଶ-ବିଦେଶରେ ପରିଚିତ କରାଇବା ନିମନ୍ତେ ଏକାନ୍ତ ଆଗ୍ରହୀ ଥିଲେ ।

ଇଂରାଜୀ ପୁସ୍ତକ 'ଦ ସଂଗୀ ଅଫ୍ ଦ ଲେଣ୍ଡ ଅଫ୍ ଜଗନ୍ନାଥ' ଏହାର ପ୍ରକୃଷ୍ଟ ଉଦାହରଣ । ଏଥିରେ ତାଙ୍କର ସ୍ୱଦେଶପ୍ରେମ ପ୍ରତିଫଳିତ ।

ସେ ଓଡ଼ିଆ ସାହିତ୍ୟର ନବାଗତ କବିମାନଙ୍କୁ ଓଡ଼ିଆ ସାହିତ୍ୟ, ରାମାୟଣ, ମହାଭାରତ ପ୍ରଭୃତି ପ୍ରଥମେ ମନଯୋଗ ଦେଇ ପାଠ କରିବାକୁ ଉପଦେଶ ଦେଉଥିଲେ । ପୁଣି କହୁଥିଲେ, ଯେଉଁମାନେ ଲେଖାଲେଖିରେ ହାତ ଦେବେ, ସେମାନେ ପ୍ରଥମେ ଓଡ଼ିଆ ଜାତିର ପରଂପରା ଓ ସଂସ୍କୃତି ସଂପର୍କରେ ସଚେତନ ହେବା ଉଚିତ ।

ଓଡିଆ ଭାଷା ଓ ସାହିତ୍ୟର ଅବମାନନା ଦେଖିଲେ ସେ ମୋଟେହେଲେ ସହ୍ୟ କରିପାରୁ ନ ଥିଲେ । 'ଶିକ୍ଷାବିଦ୍‌ର ଗାଥା' ପୁସ୍ତକରେ ଏହାର ଅସଂଖ୍ୟ ପ୍ରମାଣ ଦେଖିବାକୁ ମିଳେ । ଶିକ୍ଷା, ଶିକ୍ଷକ ଓ ଶିକ୍ଷାପ୍ରତନର ବହୁତ ମୌଳିକ ତଥ୍ୟପୂର୍ଣ୍ଣ ବିଷୟର ଅବତାରଣା କରି ସେ ନିର୍ଭିକ ମତାମତ ଉପସ୍ଥାପନ କରିଅଛନ୍ତି । ଶିକ୍ଷାବିଦର ଗାଥା (ପୃ. ୨୦୮)ରେ ସେ କହନ୍ତି, "×× କିନ୍ତୁ ଏକ ଶିକ୍ଷାବିଦ୍ ଭାବରେ, ମୋ ଜାତିର ତରୁଣସମାଜର କଲ୍ୟାଣ ଲକ୍ଷ୍ୟରେ, ଓ ମୋ' ମାତୃଭାଷା ଓ ତାର ସାହିତ୍ୟର ମର୍ଯ୍ୟାଦା ଦୃଷ୍ଟିରୁ ହିଁ ମତେ କେତେକ ଅପ୍ରିୟ ସତ୍ୟକଥା କହିବାକୁ ପଡ଼ୁଛି । କାରଣ ମୁଁ ଭୁଲିବି କି ମୋ ଭାଷା ଓ ସାହିତ୍ୟ କେବଳ ମୁଷ୍ଟିମେୟ ଲୋକର ଜୀବିକାର ସୁବିଧା ପାଇଁ ଉପହାସର ପାତ୍ର ହୋଇ ଜଗତ ଆଗରେ ଠିଆ ହେବ ? ××"

ଅବଶେଷରେ ସେ ଦୁଃଖର ସହିତ (ପୃ. ୨୮୩) ଲେଖିଛନ୍ତି, "କିନ୍ତୁ ଆଜ କାହିଁ ? ଆଜ ଓଡିଆ ଭାଷା ଓ ସାହିତ୍ୟର ସ୍ୱକୀୟ ଧର୍ମ ଓ ଚରିତ୍ର ଭ୍ରଷ୍ଟ ହେବା ସଙ୍ଗେ ସଙ୍ଗେ ଐତିହାସିକ ଓଡ଼ିଆ ଜାତିର

ସମଗ୍ର ଜାତୀୟ ଜୀବନର ସକଳ ନିଜସ୍ୱ ଚରିତ୍ର ମଧ୍ୟ ଭ୍ରଷ୍ଟ ହୋଇଯାଇଛି ।"

ଓଡ଼ିଆ ଜାତୀୟତା ଭାବରେ ସେ ସର୍ବଦା ଅନୁପ୍ରାଣିତ ଥିଲେ । ବିଦେଶରେ ଶିକ୍ଷା ସମାପ୍ତ ପରେ ବିଭିନ୍ନ ଦେଶ ପରିଭ୍ରମଣ କରି ଓଡ଼ିଶାର କଳା, ସ୍ଥାପତ୍ୟ ଓ ସଂସ୍କୃତିର ବୈଶିଷ୍ଟ୍ୟ ବିଷୟରେ ସେ ପ୍ରଚାର କରି ବୁଲିଥିଲେ । ଓଡ଼ିଆ କଳା, ସାହିତ୍ୟ ଓ ସଂସ୍କୃତିର ଦୂତ ଭାବରେ ଏନ୍‌ସାଇକ୍ଲୋପେଡ଼ିଆ ବ୍ରିଟାନିକାଠାରୁ ଆରମ୍ଭ କରି ଇଂରାଜୀ ଭାଷାରେ ପ୍ରକାଶିତ ଇଲଷ୍ଟ୍ରେଟେଡ୍ ୱିକ୍‌ଲି ପର୍ଯ୍ୟନ୍ତ ଅନେକ ପତ୍ରପତ୍ରିକାରେ ସେ ଓଡ଼ିଶା ବିଷୟରେ ବାରମ୍ବାର ଲେଖୁଥିଲେ । ଏଥିପାଇଁ ପ୍ରସିଦ୍ଧ ସାହିତ୍ୟିକ ମୁଲକ୍‌ରାଜ ଆନନ୍ଦଙ୍କଠାରୁ ବିଦେଶୀ କଳାକାର ଚାର୍ଲସ୍ ଫାବ୍ରୀ ପର୍ଯ୍ୟନ୍ତ ଅନେକ ବିଶିଷ୍ଟ ବ୍ୟକ୍ତିମାନଙ୍କ ସଙ୍ଗରେ ସମ୍ପର୍କ ସ୍ଥାପନ କରିଥିଲେ । ଓଡ଼ିଶା ସାହିତ୍ୟ, କଳା ଓ ସଂସ୍କୃତି କ୍ଷେତ୍ରରେ ଅଗ୍ରଣୀ ହେଉ, ଏହାହିଁ ତାଙ୍କର ଆନ୍ତରିକ ଇଚ୍ଛା ଥିଲା ।

ସଫଳ କାବ୍ୟ କମଳାୟନରେ କବି ମାନସିଂହଙ୍କ ଓଡ଼ିଆ-ପ୍ରାଣ, ଭାରତୀୟ ମନ ଓ ବିଶ୍ୱ ସଚେତନତାର ପ୍ରକୃତ ପରିଚୟ ମିଳିଥାଏ । ତେବେ ମାନସିଂହଙ୍କ ଶ୍ରେଷ୍ଠ ଆଦର୍ଶ ହେଲା—

ଦେଶଠୁ ମାନବ ବଡ଼, ମାନବର ଦୁଃଖ
ଡାକୁଛି ଆଶ୍ରୟ ପାଇଁ, ହୋଇ ଲକ୍ଷମୁଖ ।

'ମହାନଦୀରେ ଜ୍ୟୋତ୍ସ୍ନାବିହାର', 'ଗୋପପ୍ରୟାଣ' ପ୍ରଭୃତିରେ ଅତୀତର ଗୌରବୋଜ୍ଜ୍ୱଳ ଅଧ୍ୟାୟ ବର୍ଣ୍ଣିତ । ଏହା ପାଠ କଲେ କବିଙ୍କର ସ୍ୱଦେଶପ୍ରୀତିର ଯଥେଷ୍ଟ ପରିଚୟ ମିଳିଥାଏ ।

## : ମାନସିଂହ ରଚନାବଳୀ :

ଓଡ଼ିଆ ସାହିତ୍ୟର 'ଧାରାଶ୍ରାବଣ' ଡକ୍ଟର ମାୟାଧର ମାନସିଂହ ଓଡ଼ିଆ ଓ ଇଂରାଜୀ ଭାଷାରେ ବହୁ ଗ୍ରନ୍ଥ ରଚନା କରି-ଅଛନ୍ତି । ଓଡ଼ିଆ ଭାଷାରେ କାବ୍ୟ-କବିତା, ଆଲୋଚନା, ନାଟକ-ନାଟିକା, ପାଠ୍ୟପୁସ୍ତକ, ଶିଶୁସାହିତ୍ୟ ଓ ଅନୁବାଦ ବିଭିନ୍ନ ବିଭାଗରେ ସେ ଲେଖନୀ ଚାଳନା କରିଥିଲେ ।

ଏ ସମସ୍ତ ରଚନାରେ ତାଙ୍କର ନିଜସ୍ୱ ଶୈଳୀ ଓ ସ୍ୱତନ୍ତ୍ର ବିଚାରଧାରା ଦେଖିବାକୁ ମିଳିଥାଏ ।

ଶିକ୍ଷା, ସଂସ୍କୃତି, ରାଜନୀତି ଉପରେ ସେ ନିର୍ଭୀକ ମତାମତ ଉପସ୍ଥାପନ କରି ଏ ଦେଶର ପାଠକପାଠିକାମାନଙ୍କର ସ୍ନେହ ଓ ଶ୍ରଦ୍ଧାଭାଜନ ହୋଇପାରିଛନ୍ତି ।

ନିମ୍ନରେ ତାଙ୍କ ରଚିତ ପୁସ୍ତକ ତାଲିକା ପ୍ରଦତ୍ତ ହେଲା—

**କବିତାଗ୍ରନ୍ଥ :** ଧୂପ, ହେମଶସ୍ୟ, ପ୍ରେମପୁଷ୍ପ, ସେଦିନର କବିତା, କୋଣାର୍କ, ବାପୁ ତର୍ପଣ, ଅକ୍ଷତ, ମାନସିଂହ ଚୟନ, ମାଟିବାଣୀ, ଜୀବନଚିତା, କ୍ରୁଶ, ସିନ୍ଧୁ ଓ ବିନ୍ଦୁ, ସ୍ୱରାଜ୍ୟ ଆଶ୍ରମ, କିଶୋର କବିତା, ଗୀତରେଣୁ, ସନେଟ୍ ଶତକ, ଅବନ୍ତିକା ଇତ୍ୟାଦି ।

**କାବ୍ୟ :** ଉପେକ୍ଷିତା, ନିକ୍ୱଣ, ଶୁଭଦୃଷ୍ଟି, ଜେମା, ସାଧବଝିଅ, କମଳାୟନ ।

**ସମାଲୋଚନା/ଆଲୋଚନା :** ଓଡ଼ିଆ ସାହିତ୍ୟର ଇତିହାସ, ଶିକ୍ଷାବିଦର ଗାଥା, ମାଟିର ମହାକବି ସାରଳାଦାସ,

ଓଡ଼ିଆସମାଜ ଓ ସାହିତ୍ୟ, କବି ଓ କବିତା, ସାହିତ୍ୟ-ପ୍ରଭା, ସରସ୍ୱତୀ ଫକୀର ମୋହନ, ଶିକ୍ଷା, ଶିକ୍ଷକ ଓ ଶିକ୍ଷାପୁଚନ, ଜୀବନପଥ ଇତ୍ୟାଦି ।

**ଭ୍ରମଣସାହିତ୍ୟ :** ପଶ୍ଚିମ ପଥିକ ।

**ନାଟକ/ନାଟିକା :** ଗଜକବି ଉପେନ୍ଦ୍ର, ପୁଷ୍ପିତା, ପୂଜାରିଣୀ, ନଷ୍ଟ ନୀଡ଼, ବାରବାଟି, ବୁଦ୍ଧ, ଦୁର୍ଭିକ୍ଷ, ବୁଦ୍ଧଦୂତ, ଶାଶନଚକ୍ର, ପୁଷ୍ପାଭିନୟ ।

**ଅନୁବାଦ :** ଗ୍ରାମୋନ୍ନତିର ପ୍ରେମାଞ୍ଚଳର କାହାଣୀ ।

**ଇଂରାଜୀ ପୁସ୍ତକ :** Saga of the Land of Jagannath, Citizen, Education, Ripples of the Mahanadi.

**ପାଠ୍ୟପୁସ୍ତକ :** ଗଳ୍ପମଞ୍ଜରୀ, ନବଯୁଗ ପାଠମାଳା, ନାଗରିକ ପାଠମାଳା, ସାହିତ୍ୟପ୍ରଭା ଇତ୍ୟାଦି ।

ବର୍ତ୍ତମାନ ମାନସିଂ ଗ୍ରନ୍ଥାବଳୀ ତିନ ଭାଗରେ ପ୍ରକାଶ ପାଇଛି ଓ ତାଲିକାଭୁକ୍ତ ବହୁ ପୁସ୍ତକ ତହିଁରେ ସ୍ଥାନ ପାଇଛି ।

---

## ସଫଳ କାବ୍ୟ : କମଳାୟନ

ବିଂଶ ଶତାବ୍ଦୀର ସାହିତ୍ୟରୁ 'କାବ୍ୟ' କ୍ରମେ ବିଲୁପ୍ତପ୍ରାପ୍ତ ହେଉଥିଲା ବେଳେ ଯୁଗପ୍ରବର୍ତ୍ତକ ମାନସିଂହ 'କମଳାୟନ' ଭଳି ଏକ ସାର୍ଥକ ଆଧୁନିକ କାବ୍ୟ ରଚନା କରି ସାବ୍ୟସ୍ତ କଲେ ଯେ,

ସେ ପରଂପରା-ବିରୋଧୀ ନୁହନ୍ତି । ଓଡ଼ିଆ ଭାଷାର ଅତୀତ ସଂସ୍କୃତି ଓ ପରଂପରାର ସେ ଜଣେ ଯୋଗ୍ୟ ଦାୟାଦ ଅଟନ୍ତି ।

କିନ୍ତୁ 'କମଳାସ୍ୱପ୍ନ' କାବ୍ୟ ରୀତିଯୁଗୀୟ ସାହିତ୍ୟର ପରଂପରାକୁ ବିଶ୍ୱାସ ନ କରି ଆଧୁନିକ ଯୁଗ ପୃଷ୍ଠଭୂମିରେ ଅତିପରିଚିତ ନାୟକ-ନାୟିକାଙ୍କୁ ନେଇ ସୃଷ୍ଟି ହେଲା । ଏହି କାବ୍ୟରେ କେତେକ ଆନ୍ତର୍ଜାତିକ ଚରିତ୍ର ଓ ଘଟଣାର ସମାବେଶ ଦେଖିବାକୁ ମିଳୁଥିଲେ ମଧ୍ୟ ଏହା ସ୍ୱାଧୀନତାର କଟୁକାଳ ପୂର୍ବ ଓ ପରର ଚିତ୍ର ବହନ କରିଛି ।

କାବ୍ୟନାୟକ କମଳର 'ଅସ୍ୱପ୍ନ' ବା ଜୀବନାଦର୍ଶ କମଳାସ୍ୱପ୍ନର ଆଧାର ହୋଇଥିବାରୁ ଏହି କାବ୍ୟର ନାମ 'କମଳାସ୍ୱପ୍ନ' ରଖାଯାଇଛି ।

ଉତ୍କଳମଣି ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ 'କମଳ' ଦେଶ ଓ ଦଶର ସେବାରେ ନିଜକୁ ନିୟୋଜିତ କରିଛି । ଜୀବନର ବହୁ ବାଧାବିଘ୍ନ ସତ୍ତ୍ୱେ ସେ ନିଜ ସିଦ୍ଧାନ୍ତରେ ଅଟଳ ରହିଛି ।

ଦରିଦ୍ର ପିତାମାତା ଓ ବିଧବା ଭଉଣୀ ପ୍ରତି କର୍ତ୍ତବ୍ୟସାଧନ କରିବା ପାଇଁ ଯେତେବେଳେ ତା'ମନରେ ସଂଘର୍ଷ ଦେଖାଦେଇଛି, ସେ ଶିକ୍ଷକତା ଗ୍ରହଣ କରି ପରିବାର ପୋଷଣକୁ ଆଦରିନେଇଛି । ଏଠାରେ ନାୟକ କମଳର 'ମାନବିକତା' ପ୍ରକାଶ ପାଇଛି ।

ପରେ ରାଜନୈତିକ ଜୀବନର ଜାଲଜାଳିଆତି ଦେଖି ସେ ଦଳତ୍ୟାଗ କରି ଉସତ୍ତ୍ୱ ମାନବିକତାର ପରିଚୟ ହିଁ ଦେଇଛି ।

ଦେଶ-ଜାତି-ଧର୍ମ ସବୁରି ଉପରେ ମାନବ ହିଁ ସତ୍ୟ ଓ ମାନବିକତା ହିଁ ସତ୍ୟ ଏହାହିଁ ହେଉଛି କମଳାସ୍ୱପ୍ନର ସ୍ୱତନ୍ତ୍ର ବାର୍ତ୍ତା ।

କମଳାୟନର ପ୍ରଥମ ଭାଗରେ କମଳ ଓ କରୁଣାର ନିବିଡ଼ସମ୍ପର୍କ ଜୀବନରୁ ପ୍ରତ୍ୟାବର୍ତ୍ତନ ପରେ ଭାରତୀୟ ପଲ୍ଲୀ-ଉନ୍ନୟନ ମଧ୍ୟରେ ପ୍ରାଣତ୍ୟାଗ, ଦ୍ୱିତୀୟ ଭାଗରେ ସେମାନଙ୍କର ଏକମାତ୍ର ସନ୍ତାନ ବିଶ୍ୱମିତ୍ରର ଅକ୍ସଫୋର୍ଡ଼ରେ ଶିକ୍ଷା, ଇଉନେସ୍କୋନ୍ ତରୁଣ ସେପିଲ୍‌କୋ ସହିତ ପ୍ରଣୟ ଏବଂ ୧୯୫୬ର କମ୍ୟୁନିଷ୍ଟ ସାମ୍ରାଜ୍ୟବାଦ ବିରୁଦ୍ଧରେ ଘଟିଥିବା ହଙ୍ଗେରୀୟ ବିପ୍ଳବରେ ସେପିଲ୍‌କୋର ଆତ୍ମାହୂତି ଦେଇ ସେହି ପ୍ରଣୟର ବ୍ୟର୍ଥତା, ହଙ୍ଗେରୀୟ ସାମରିକ ନେତାର ସ୍ତ୍ରୀ ମେରିୟାଠାରୁ ବିଶ୍ୱମିତ୍ର ପ୍ରତି ଗାଢ଼ କରୁଣପତ୍ର ବର୍ଣ୍ଣିତ ।

କାବ୍ୟର ମୁଖ୍ୟ ଚରିତ କମଳ ଏକ ଆଦର୍ଶ ପୁତ୍ର, ଭ୍ରାତା, ଶିକ୍ଷକ, ସ୍ୱାମୀ ଓ ଉଦାର ମାନବପ୍ରେମୀ ରୂପେ ଚିତ୍ରିତ । କାବ୍ୟ-ନାୟିକା କରୁଣା ମଧ୍ୟ ଏକ ଆଦର୍ଶ କନ୍ୟା, ପତ୍ନୀ ଓ ଗୃହିଣୀ ଭାବରେ ରୂପାୟିତ । କିନ୍ତୁ ନାୟକ ଚରିତର ଜଟିଳତା ନାୟିକା ଚରିତରେ ଅନୁପସ୍ଥିତ ।

କମଳାୟନ କାବ୍ୟରେ ମାନସିଂହଙ୍କର ଜାତୀୟ ସଂସ୍କୃତି ଓ ପରଂପରା ପ୍ରତି ଏକ ସଂସ୍କାରଶୀଳ ମନର ପରିଚୟ ମିଳିଥାଏ । ଏହା ଅନ୍ଧପ୍ରତ୍ୟାବକତା ନୁହେଁ । ସେ ନିଜ ଦେଶର କୁସଂସ୍କାର, ଜାତି ଓ ଧର୍ମ-ବିଭେଦ ରୂପକ ବ୍ରଣମାନଙ୍କୁ ଡାକ୍ତରୀ ମନୋଭାବ ନେଇ ଅସ୍ତ୍ରୋପଚାର କରିଛନ୍ତି । ସେ କେବଳ ଦୁଷ୍ଟ ବ୍ରଣମାନଙ୍କ ଉପରେ ହିଁ ସୁତୀକ୍ଷ୍ଣ ଛୁରିକାଘାତ କରିଛନ୍ତି, ସୁସ୍ଥ ଶରୀର ଉପରେ ନୁହେଁ । ଏ ଦେଶର ମହାନ୍ ସଂସ୍କୃତି ଓ ଆଧ୍ୟାତ୍ମିକ ପରଂପରା ତାଙ୍କୁ ସର୍ବଦା ଅଭିଭୂତ କରିଛି ।

ସେ ବାନରଧର୍ମୀ ଅନୁକରଣକାରୀଙ୍କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଛନ୍ତି—

ବିଚଳିତମନା ଏବେ ଏସିଆ-ଯୁବକେ
ନ ପଶୁଣ ନିଜ ରନ୍ଧ୍ରେ, ଧାଆଁନ୍ତି ପୁଲକେ
ଦେଖିବାକୁ ଇଷ୍ଟାଙ୍ଗିଷ୍ଟୁ କୁତ୍ସିତ ସଭ୍ୟତା
ଇଉରୋପର, ଦେଶେ ଫେରି ବର୍ଣ୍ଣି ସେହି କଥା । × ×

ସେହିପରି ଚିଲିକା ଓ ତାର ଉପାନ୍ତ ଅଞ୍ଚଳମାନଙ୍କର ଅପରୂପ ସୌନ୍ଦର୍ଯ୍ୟ ରୂପାୟିତ କରିବାରେ କବି ସର୍ବଦା ଜାଗ୍ରତ ।

"ତପନ ବୁଡ଼ଇ ଧୀରେ ହେଲେଣି ପାହାଡ଼େ,
ଶାନ୍ତ, ସନ୍ଧ୍ୟାଗ୍ରସ୍ତା ମାଡ଼ିଆସେ ଭ୍ରୂତପଦେ
ଗିରି-ଶ୍ରେଣୀ ଲଙ୍ଘି ଉଡ଼ି ଚିଲିକା ଉପାନ୍ତେ । × ×"

କମ୍ବା "ପକ୍ଷୀ ଦଳ ଦଳ
ଉଡ଼ୁଛନ୍ତି ମାଳାକାରେ, ଅର୍ଦ୍ଧବୃତ୍ତେ; ଅବା
ତଳେ ଖସି, ସୁମଧୁର କୋଳାହଳେ ପୁଣି
ସ୍ନେହ-ବିକର୍ଷିତ ମାତୃବକ୍ଷେ ଚିଲିକାରେ । × ×"

ଏହିପରି ଅନେକ ସୁଦୃଶ୍ୟ, ଜୀବନ୍ତ ଚିତ୍ର କମଳାୟନ ଗର୍ଭସ୍ଥ କରିଛି ।

କାବ୍ୟର ଆରମ୍ଭରେ କବି କହିଛନ୍ତି, 'ଉତ୍ତର' ଦୁର୍ଭିକ୍ଷ-ପ୍ରପୀଡ଼ିତ ଅଞ୍ଚଳକୁ ଉତ୍କଳମଣି ଗୋପବନ୍ଧୁଙ୍କର ନେତୃତ୍ୱରେ ଏକ ସ୍ୱେଚ୍ଛାସେବୀ ଦଳ ସାହାଯ୍ୟ ବିତରଣ ପାଇଁ ଯାଇଥିଲେ । ଏହି ବିତରଣକାରୀ ଦଳଙ୍କ ମଧ୍ୟରେ କମଳଲୋଚନ ମହାପାତ୍ର ନାମକ ଜଣେ ବିଶ୍ୱବିଦ୍ୟାଳୟ ଯୁବକଗୃହସ୍ଥ ଥିଲେ । ଦଳ ଦଳ ହୋଇ ନିରନ୍ନ, ନିସ୍ତେଜ, ଦୁର୍ଭିକ୍ଷଜନିତ ନରନାରୀ ସାହାଯ୍ୟ ଆଶାୟୀ ହୋଇ ଧାଇଁ ଆସିଥିଲେ । ତହିଁ ମଧ୍ୟରେ ଜଣେ ଲୋକ, ଯାହାଙ୍କୁ ଦେଖିଲେ ଜଣାଯିବ ଯେ, ସେ ଦୁଃସ୍ଥ ନୁହନ୍ତି ବୋଲି—ସେ ମଧ୍ୟ

ସାହାଯ୍ୟ ପାଇଁ ଆସିଥିଲେ । କମଳ ତାଙ୍କୁ ଦେଖି ବିଦ୍ରୂପ କରି କହିଲେ, ତୁମପରି ସୁସ୍ଥ ଲୋକଙ୍କୁ ସାହାଯ୍ୟ ଦେବାର ଆବଶ୍ୟକତା ନାହିଁ । ତୁମେ ଆଜି ସାହାଯ୍ୟ ପାଇଁ ଆସିବ ନାହିଁ ।

ଏତିକିବେଳେ ଜନତାର ସ୍ୱର ଶୁଭିଲା, ଆମ ହାତରୁ କାଟି ତାଙ୍କୁ ଦିଅନ୍ତୁ । ସେ ଆମ ଆଖଡ଼ାର ଗୁରୁ—ଓଡ଼ିଆ ପାଇକଜାତିର ମେରୁଦଣ୍ଡ ତାଙ୍କ ହାତରେ ଗଢ଼ା ହୋଇଛି ।

ଏତିକିବେଳେ ଗୋପବନ୍ଧୁ ଅତି ଶାନ୍ତ ସ୍ୱରରେ କହିଲେ, "କମଳ ! ଏପରି ତିରସ୍କାର ବନ୍ଦ କର ।"

କାବ୍ୟର ନାୟକ କମଳର ଚିନ୍ତାରାଜ୍ୟ ଦୋହଲିଉଠିଲା । ଏଇଠୁ ସେ କଳ୍ପନା ପରିତ୍ୟାଗ କରି ବାସ୍ତବମୁଖୀ ହୋଇଛନ୍ତି ।

କବି ମାନସିଂହ ଏହି କାବ୍ୟରେ ପାଠକର ମନ ଓ ପ୍ରାଣର ସେହି ଅତି କୋମଳ ଅଂଶକୁ ଏପରି ଭାବରେ ସ୍ପର୍ଶ କରିଛନ୍ତି, ଏପରି ଭାବରେ ଆଘାତ କରିଛନ୍ତି ଯେ, ପାଠକ ସ୍ତମ୍ଭୀଭୂତ ହୋଇଛି, ଚକିତ ହୋଇଛି ।

ଓଡ଼ିଆ-କାବ୍ୟ-ପରଂପରାରେ ନୂତନତ୍ୱ ସୃଷ୍ଟି କରି କମଳାୟନ ଆଧୁନିକ ପୃଷ୍ଠଭୂମି ଉପରେ ଶାଖା-ପ୍ରଶାଖାମଣ୍ଡିତ, ପତ୍ର-ପୁଷ୍ପ-ସୁଶୋଭିତ ହୋଇ ଏକ ଅଦ୍ୱିତୀୟ କାବ୍ୟ ରୂପରେ ଦଣ୍ଡାୟମାନ ।

ସବୁ ସୃଷ୍ଟି ପରି ମାନସିଂହଙ୍କ ସଂସ୍କାରମୁକ୍ତ ମନ ଓ ବିଶ୍ୱମାନବିକତାର ଦୃଷ୍ଟିକୋଣ କମଳାୟନରେ ସଫଳ ଭାବରେ ରୂପାୟିତ ।

ଏହା ଏକ ଚରିତ୍ର ଓ ଘଟଣାବହୁଳ କାବ୍ୟ ଅଟେ ।

## ଓଡ଼ିଆ ସାହିତ୍ୟର ଇତିହାସ : ଆଗ୍ରନ୍ଥ

ଯେଉଁ ପୁସ୍ତକ ରଚନା କରି ମାନସିଂହ ଓଡ଼ିଆ ସାହିତ୍ୟରେ ଓ ଓଡ଼ିଆ ସାହିତ୍ୟିକ ମହଲରେ ଅନେକ ଆଲୋଡ଼ନ, ବହୁ ଘଣ୍ଟା-ଚକଟା ଓ ଯୁକ୍ତିତର୍କ, ବାଦବିସମ୍ବାଦ, ଟଣାଓଟରା ପର୍ଯ୍ୟାପ୍ତ ସୃଷ୍ଟି କଲେ, ସେ ପୁସ୍ତକର ନାମ ଓଡ଼ିଆ ସାହିତ୍ୟର ଇତିହାସ ।

ଏ ପୁସ୍ତକ ଇଂରାଜୀ ଭାଷାରେ ରଚିତ ହୋଇଥିଲା । ପରେ ସାମାନ୍ୟ ଅଦଳବଦଳ ସହ ଓଡ଼ିଆ ଭାଷାରେ ପ୍ରକାଶ ପାଇଛି । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଉତ୍କଳମଣି ଗୋପବନ୍ଧୁଙ୍କ ଉପରେ ରଚିତ ପ୍ରଥମ ଇଂରାଜୀ ପ୍ରବନ୍ଧ, ଗୋପାଳକୃଷ୍ଣଙ୍କ କବିତାରୁ କେତେକଙ୍କର ଇଂରାଜୀ ଅନୁବାଦ (Love Lyrics of Gopal-krishna), ରବୀନ୍ଦ୍ରନାଥଙ୍କ ଓଡ଼ିଶା-ସଂପୃକ୍ତ ଏକ ବଙ୍ଗଳା ରଚନାର ଇଂରାଜୀ ଅନୁବାଦ (Temples of Bhubaneswer), ଆଧୁନିକ ଓଡ଼ିଆ ସାହିତ୍ୟ ଉପରେ ଇଣ୍ଡିଆନ୍ ରିଭ୍ୟୁରେ ପ୍ରକାଶିତ ମାନସିଂହଙ୍କ ଇଂରାଜୀ ପ୍ରବନ୍ଧ, ବାଙ୍ଗାଲୋର୍‌ରୁ ପ୍ରକାଶିତ ଇଂରାଜୀ 'ତ୍ରିବେଣୀ' ପତ୍ରିକାରେ ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ଇତିହାସ ତଥା 'ଭୀମଭୋଇ'ଙ୍କ ଉପରେ ନିବନ୍ଧମାନ ଲେଖି ମାନସିଂହ ସ୍ୱୀୟ ତଥ୍ୟ, ପାଣ୍ଡିତ୍ୟ ଓ ଇଂରାଜୀ ଭାଷା ରଚନାରେ ଯଥେଷ୍ଟ ସୁନାମ ଅର୍ଜନ କରିଥିଲେ ।

ଜାତୀୟ ସାହିତ୍ୟ ଏକାଡ଼େମୀ କର୍ତ୍ତୃକ ପ୍ରକାଶିତ 'କଣ୍ଟେମ୍ପ-ରାରି ଇଣ୍ଡିଆନ୍ ଲିଟରେଚର୍' (Contemporary Indian Literature) ରେ ମାନସିଂହ ଆଧୁନିକ ଓଡ଼ିଆ ସାହିତ୍ୟର ଅଂଶକ ଲେଖି ପ୍ରଶଂସାର୍ହ ହୋଇଥିଲେ । କିନ୍ତୁ ଏଥିପାଇଁ ମଧ୍ୟ

ଓଡ଼ିଶାର ମାନସିଂହଙ୍କୁ ଅନେକ ସମାଲୋଚନାର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

ପରେ ଜାତୀୟ ସାହିତ୍ୟ ଏକାଡ଼େମୀ ପକ୍ଷରୁ ଫରମାସ ପାଇ ସେ ଇଂରାଜୀ ଭାଷାରେ ଓଡ଼ିଆ ସାହିତ୍ୟର ଇତିହାସ (History of Oriya Literature) ଲେଖିଲେ ।

ଏହି ଇତିହାସ ରଚନା ସମ୍ପର୍କରେ ମତାମତ ଦେବାକୁ ଯାଇ ସେ କହିଥିଲେ, "ସାହିତ୍ୟ ବା ଜାତୀୟ ଇତିହାସ ଯଦି ନାମ-ଧାମ-ଘଟଣାର ତାଲିକା ମାତ୍ର ବୋଲି ଧରାଯାଏ, ତେବେ ତାହା ଯେ କୌଣସି ଲୋକ ପାରନ୍ତେ । × × କିନ୍ତୁ ଏକ ସାହିତ୍ୟର ଇତିହାସ ବା ଏକ ଜାତିର ଇତିହାସ ସମ୍ପୃକ୍ତ ଜାତିର ଆତ୍ମାର ଇତିହାସ । ସେଠି ଲେଖକ, ପାଞ୍ଜିକାର ମାତ୍ର ନୁହେଁ । ଏ କ୍ଷେତ୍ରରେ ସେ ନିଜ ଜାତି ବା ସାହିତ୍ୟର ଗୁଣାଗୁଣର ପରୀକ୍ଷକ, ଗ୍ରାହକ ଓ ପ୍ରଶଂସକ ଏବଂ ଦରକାର ପଡ଼ିଲେ ନିନ୍ଦୁକ ମଧ୍ୟ । ଯେ କୌଣସି ଇତିହାସ କେବଳ ଏହି ଦୃଷ୍ଟିକୋଣରୁ ହିଁ ମୂଲ୍ୟବାନ ।"

ପୁଣି ସେ କହନ୍ତି, "ଏ ଦେଶର କେତେକ ପ୍ରଫେସର ଜାଣନ୍ତି ନାହିଁ ଯେ, ଇତିହାସ କହିଲେ ସନ-ଜନର ବା ରଜା-ରାଣୀର କାଟ୍‌ଲଗ୍ ମାତ୍ର ନୁହେଁ ।"

କିନ୍ତୁ ଆଲୋଚ୍ୟ ଓଡ଼ିଆ ସାହିତ୍ୟର ଇତିହାସ ଗ୍ରନ୍ଥରେ କବି ଓ ଲେଖକମାନଙ୍କର ସ୍ଥାନ ଓ ସମୟ ନିର୍ଦ୍ଧାରଣରେ ଭୁଲ୍ ଥିବା ହେତୁ ଓ ଅଧିକାଂଶ କବି ଓ ଲେଖକଙ୍କ ନାମରେ ବିରୁଦ୍ଧ ମତ ଦିଆଯିବା ସଙ୍ଗେ ସଙ୍ଗେ, ଆଉ କେତେକ ଉଲ୍ଲେଖଯୋଗ୍ୟ କବି ଓ ଲେଖକଙ୍କ ନାମ ମଧ୍ୟ ଉଚ୍ଚାରଣ କରାଯାଇ ନ ଥିବାରୁ, ପୁସ୍ତକରେ ଭୁଲ୍ ତଥ୍ୟ ଉପସ୍ଥାପନ କରାଯାଇଛି ବୋଲି ପ୍ରରୋକ୍ଷ ଓ ପ୍ରତ୍ୟକ୍ଷ

ଭାବରେ ଲେଖକ ମାନସିଂହଙ୍କୁ ସମାଲୋଚନା କରାଯାଇଥିଲା । ଆହୁରି ବି' କୁହାଗଲା ଯେ, ଏହି ପୁସ୍ତକଦ୍ୱାରା ଓଡ଼ିଆ ଜାତି ଓ ଭାଷା ଅପମାନିତ ହେଲା । ପୁସ୍ତକରେ କେତେଜଣ କବି ଓ ଲେଖକଙ୍କୁ ଅଯଥା ପ୍ରଶଂସା ଓ ଅନ୍ୟ କେତେକଙ୍କୁ ଅଯଥା ନିନ୍ଦା କରାଯାଇଛି ବୋଲି ପ୍ରବନ୍ଧ ଲେଖାଗଲା । 'ଛେଦପଦାଁର', 'ପ୍ରବନ୍ଧ-ପୂର୍ଣ୍ଣଚନ୍ଦ୍ର', 'ମାଦଳାପାଞ୍ଜି' ପ୍ରଭୃତି ଓଡ଼ିଆ ଶବ୍ଦର ଭୁଲ୍ ଇଂରାଜୀ-ପ୍ରତିନାମକୁ କେନ୍ଦ୍ର କରି ବାଦବିସମ୍ବାଦ ପ୍ରକାଶ ପାଇଥିଲା । କେବଳ ସେତିକି ନୁହେଁ, 'ଓଡ଼ିଆ ସାହିତ୍ୟର ଇତିହାସ' ଇଂରାଜୀ-ପୁସ୍ତକର ପ୍ରଚାର ଓ ପ୍ରସାର ନିଷେଧ ପାଇଁ ଅନେକ ଚେଷ୍ଟା କଲେ ।

ଏହି ପୁସ୍ତକ ପ୍ରକାଶିତ ହେବା ପରେ, ଡକ୍ଟର ମାନସିଂହଙ୍କ ଅବସ୍ଥା କ'ଣ ହୋଇଥିଲା, ସମ୍ବଲପୁରର ବିଶିଷ୍ଟ ସାହିତ୍ୟିକ ଶ୍ରୀ ଶ୍ରଦ୍ଧାକର ସୂପକାରଙ୍କ ଡକ୍ଟର ମାନସିଂହଙ୍କୁ ଲେଖିଥିବା ୧୭।୭।୧୯୬୪ର ଚିଠି ପ୍ରଣିଧାନଯୋଗ୍ୟ । ସେ ଲେଖିଛନ୍ତି, "ଆପଣଙ୍କର ହିଷ୍ଟ୍ରି ଅଫ୍ ଓଡ଼ିଆ ଲିଟରେଚର ଏକ ମୌଳିକ ଉଦ୍ୟମ ଓ ସଫଳ ରଚନା । × × ପ୍ରଜାତନ୍ତ୍ର-ବିଷୁବମିଳନ ପରେ ଏହି ବହି ଓ ଆପଣଙ୍କ ଉପରେ ଚତୁର୍ଦ୍ଦିଗରୁ ଆକ୍ରମଣ ହେଉଥିବା ଦେଖି, ବିସ୍ମିତ ହୋଇ, ବହିଟି ଖୁବ୍ ଭଲଭାବରେ ଅଧ୍ୟୟନ କଲି । ପଢ଼ିଲା ପରେ ମୋର ବିସ୍ମୟର ମାତ୍ରା ବୃଦ୍ଧି ପାଇଲା । ଅନେକ ସାହିତ୍ୟିକ ବନ୍ଧୁମାନଙ୍କ ସହିତ ଏହି ଆକ୍ରମଣ ବିଷୟ ନେଇ ଆଲୋଚନା କରି ମୁଁ ବୁଝିଛି ଯେ, ଆପଣଙ୍କ ଉପରେ ଆକ୍ରମଣ କେବଳ ଈର୍ଷାମୂଳକ । ଆଧୁନିକ ଯୁଗରେ ଯେଉଁ ଲେଖକମାନଙ୍କର ନାମ ଆପଣ ଉଲ୍ଲେଖ କରି ନାହାନ୍ତି ବା ଯେଉଁମାନଙ୍କ ଲେଖା ଉପରେ ପ୍ରତିକୂଳ ମତ ଦେଇଛନ୍ତି, ସେହିମାନେ ଏହି କଟୁ ସମାଲୋଚନା କରୁଛନ୍ତି । × ×"

ଲେଖକ ଶ୍ରୀ ଲକ୍ଷ୍ମୀଧର ନାୟକ ଡକ୍ଟର ମାନସିଂହଙ୍କୁ ଲେଖିଥିଲେ, "ଗତ କେତେଦିନ ଧରି କଟକରେ ରହୁଥିବା ବେଳେ ଆପଣଙ୍କ ଲିଖିତ 'ଓଡ଼ିଆ ସାହିତ୍ୟର ଇତିହାସ' ନେଇ ବିଭିନ୍ନ ସାହିତ୍ୟିକଙ୍କ ଭିତରେ ଆକ୍ଷେପ ଓ ଆଲୋଚନା ଏତେ ନିମ୍ନ ସ୍ତରକୁ ଯିବାର ମୁଁ କଳ୍ପନା କରିପାରି ନ ଥିଲି । ବହିରେ ହୁଏତ କିଛି ଭୁଲ ଅଛି । କିନ୍ତୁ ତାହାର ଆଦୌ ଉପାଦେୟତା ନାହିଁ ଏବଂ ସେ ବହିକୁ ପୋଡ଼ିଦେବା ଉଚିତ, ଏପରି ମନ୍ତବ୍ୟ କେତେଜଣ ପ୍ରତିଷ୍ଠିତ ସାହିତ୍ୟିକଙ୍କର ଶୁଣିବା ବଡ଼ ପରିତାପର କଥା । × × ମୋର ଧାରଣା, କେତେଜଣ ସାହିତ୍ୟିକ ଆପଣଙ୍କ ସାହିତ୍ୟିକ କୃତିକୁ ମୁକାବିଲା କରିବାକୁ ସମର୍ଥ ନ ହୋଇ ଏପରି ଏକ ଅଭିଯାନ ଆରମ୍ଭ କରିଛନ୍ତି । × × ×"

ମାନସିଂହ ନିଜ ପକ୍ଷରୁ କହିଲେ, କାଖିପୁ ସାହିତ୍ୟ ଆକାଡେମୀ ପ୍ରକାଶିତ ଓଡ଼ିଆ ସାହିତ୍ୟ ଇତିହାସର କେବଳ ତ୍ରୁଟି (ଅଧିକାଂଶ ମିଥ୍ୟା, ଅବାନ୍ତର, ଅଯଥାର୍ଥ ଓ ଘୋର ସାହିତ୍ୟିକ ଅଜ୍ଞତାରହିଁ ପରିଚାୟକ) ଗୁଡ଼ାଏ ଠିଆ କରାଇ ଓଡ଼ିଶାର ପତ୍ର-ପତ୍ରିକାମାନଙ୍କରେ ଯେଉଁପ୍ରକାର ତଥାକଥିତ 'ଆଲୋଚନା' ହେଲା, ତାହା କୌଣସି ସଭ୍ୟ ଦେଶ ବା ଭାଷାରେ କଳ୍ପନା କରାଯାଇ ନ ପାରେ ।

ତେବେ ଓଡ଼ିଆ ସାହିତ୍ୟର ଇତିହାସ ଓଡ଼ିଆ ସଂସ୍କରଣରେ ଡକ୍ଟର ମାନସିଂହ ଇଂରାଜୀ ଗ୍ରନ୍ଥରେ ଜଣା-ଅଜଣାରେ କରିଥିବା ଭୁଲଭ୍ରାନ୍ତି ସଂଶୋଧନ କରିନେଇ, ତତ୍‌ସଂପର୍କରେ ଟିପ୍‌ପଣୀମାନ ଦେଇଥିବା ଦେଖିବାକୁ ମିଳେ ।

ଏହି ଘଟଣା ପରେ ମାନସିଂହ ନିତାନ୍ତ କ୍ଷୁବ୍ଧ ହୋଇଥିଲେ । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସେ ଅଧ୍ୟାପକ ବ୍ରଜକିଶୋର ରାୟଙ୍କୁ

ପତ୍ର ଲେଖିଲାବେଳେ ସେହି ଅଶୋଭନୀୟ ଘଟଣା ସ୍ମରଣ କରି ଲେଖିଥିଲେ, "ଆଜ ମାନସିଂହ 'କୃତିତ୍ୱ' ଉପରେ ଲେଖିବାକୁ ତୁମର ଯଦି ପୂର୍ବର ତରୁଣ ସାହସିକତା କୁଳାଉନି, ତେବେ ମାନସିଂ 'କୃତିତ୍ୱ' ଉପରେ ତ ଦୃକ୍ପାତରେ ଗୁଡ଼ାଏ ଲେଖିପାର । କାରଣ ଓଡ଼ିଆ-ସାହିତ୍ୟ-ନଗରରେ 'ମାର' 'ମାର' 'ଡାଙ୍ଗ ଡାଙ୍ଗ' କହି ଠେଙ୍ଗା ଉଞ୍ଚାଇବାର ଏକମାତ୍ର 'କୁଞ୍ଜ' ପାଉଥିଆ ଉଗ୍ର ହେଉଛନ୍ତି ମାନସିଂ ।" (ଚିଠି ୭।୧।୬୩)

ଏହାକୁ ଲକ୍ଷ୍ୟ କରି ଅଧ୍ୟାପକ ବସ୍ତ୍ର ଡକ୍ଟର ମାନସିଂହଙ୍କ ମୃତ୍ୟୁପରେ ଶୋକାଭିଭୂତ ହୋଇ, ସତେ ଅବା ସମଗ୍ର ଓଡ଼ିଆ ଜାତି ପକ୍ଷରୁ ପ୍ରତିନିଧିତ୍ୱ କରି ଡକ୍ଟର ମାନସିଂହଙ୍କ ପାଖରେ କ୍ଷମା ଭିକ୍ଷା କଲେ ଓ ଜାତି ପ୍ରତି ଲକ୍ଷ୍ୟ କରି କହିଲେ, "× × ସଂଶୋଧନ କର । ପୁନରୁଲ୍ଲେଖନ କର । ଜାତିର 'ଡକ୍ଟର' ଓ ପରବର୍ତ୍ତୀ 'ସିଂହ'ମାନେ, ଜାତିର 'ପାଠକ' ପ୍ରଧାନମାନେ, ସେଦିନ ଯେଉଁମାନେ ଗୋଡ଼େଇ ଗୋଡ଼େଇ ସେ ପ୍ରଶାନ୍ତ ହସବକଉରିକାଙ୍କୁ ମାର୍କିନ୍ଙ୍କର ଛାପ ଭିତରେ 'ହାତାହାତି' କରିଥିଲେ, ସେହିମାନେ ନିଜ କର୍ତ୍ତିକୁ, ତାହା ପାଠ ମାଠିଆ ଭିତର 'ଧର୍ଷଣ'କୁ ବର୍ଜନ ଯାହାହେଉ, ସଂଶୋଧନ କର, ଅନୁତପ୍ତ ହୁଅ ।"

ଅବଶେଷରେ ଡକ୍ଟର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)ଙ୍କ ମନ୍ତବ୍ୟ ଦେଇ ଏ ଅଧ୍ୟାୟର ସମାପ୍ତି କରୁଛି ।

"ସେ ଥିଲେ ଚିର ବିପ୍ଳବୀ, ସଂସ୍କାରମୁକ୍ତ ଓ ସ୍ୱାଧୀନ ବକ୍ତର-ବନ୍ତ । ନିର୍ଭିକ ଭାବରେ ସେ ଆପଣାର ମତବ୍ୟକ୍ତ କରୁଥିଲେ । ଏଣୁ ତାଙ୍କୁ ଜୀବନରେ ବହୁ କ୍ଷେତ୍ରରେ ଅପ୍ରୀତିଭାଜନ ହେବାକୁ ପଡ଼ିଛି । × × ×

× × ପ୍ରସଙ୍ଗକ୍ରମେ ମୁଁ ତାହାଙ୍କ ଇଂରାଜୀରେ ଲିଖିତ ଓଡ଼ିଆ ସାହିତ୍ୟର ଇତିହାସ ପୁସ୍ତକର ଏକ ସମାଲୋଚନା ଲେଖିଥିଲି । ମାତ୍ର ତାହାଙ୍କ ହୃଦୟରେ ମୋ ପ୍ରତି ଯେ ପ୍ରଚୁର ମମତା ଓ ମୋ ବିଷୟରେ ତାଙ୍କର ଧାରଣା ଯେ ଭିନ୍ନ, ଏହାର ପରିଚୟ ମୁଁ ବହୁ କ୍ଷେତ୍ରରେ ଲାଭ କରିଛି ।"

---

## ଶିକ୍ଷକ ମାନସିଂହଙ୍କର ଜୀବନ ଗାଥା :
## ଶିକ୍ଷାବିଦ୍‌ର ଗାଥା :

'ଶିକ୍ଷାବିଦ୍‌ର ଗାଥା' କେବଳ ଶିକ୍ଷକ ମାନସିଂହଙ୍କର ଶିକ୍ଷା ସମ୍ବନ୍ଧୀୟ ଗାଥା ନୁହେଁ, ଏହା ତାଙ୍କର ବ୍ୟକ୍ତିଗତ ଜୀବନର ଉତ୍ଥାନ-ପତନ, ସଫଳତା-ବିଫଳତା ତଥା ଶିକ୍ଷାଯୁତନର ଅନେକ କୁହା-ଅକୁହା ଗାଥା । ଡକ୍ଟର ମାୟାଧର ମାନସିଂହ ସ୍ୱଜୀବନ ଚରିତ ଲେଖିଛନ୍ତି କି ନାହିଁ ଜଣା ନାହିଁ; କିନ୍ତୁ ଶିକ୍ଷାବିଦ୍‌ର ଗାଥା ତାଙ୍କ ବ୍ୟକ୍ତିଗତ ଜୀବନର ପ୍ରାୟ ଏକ ଉଜ୍ଜ୍ୱଳ ଚିତ୍ର ଦେବାରେ ସମର୍ଥ ହୋଇଥାଏ ।

ଏହି ପୁସ୍ତକରେ ଆମେ ଆମ ଦେଶର ଶିକ୍ଷାପ୍ରଣାଳୀ, ଶିକ୍ଷାଯୁତନ ଓ ଶିକ୍ଷାକ୍ଷେତ୍ରରେ ଥିବା ବିଭିନ୍ନ ଦୋଷଦୁର୍ବଳତା ସମ୍ପର୍କରେ ସମ୍ୟକ ଜ୍ଞାନ ଲାଭ କରିଥାଉଁ । ଡକ୍ଟର ମାନସିଂହ ଆମ ଦେଶର ଶିକ୍ଷା ସମସ୍ୟାକୁ ଅଭିଜ୍ଞ ଶିକ୍ଷକ ଭାବରେ ବିଭିନ୍ନ ଦୃଷ୍ଟି-

କୋଣରୁ ବିଗ୍ରହ କରିଛନ୍ତି ଓ ତୋଷଦୁର୍ବଳତା ଘୁଂଚାଇବାର କେତେକ ଉପାୟ ମଧ୍ୟ ପ୍ରଦର୍ଶନ କରିଛନ୍ତି ।

ଏହି ପୁସ୍ତକରେ ଏକବିଂଶ ଅଧ୍ୟାୟ ରହିଛି । ଯେଉଁ ଅଧ୍ୟାୟ-ଗୁଡ଼ିକ ପାଠକମଣ୍ଡଳରେ ଆଲୋଡ଼ନ ସୃଷ୍ଟି କରିଥାଏ, ତାର ଏକ ସଂକ୍ଷିପ୍ତ ସୂଚନା ଦିଆଗଲା ।

ପ୍ରଥମ ଅଧ୍ୟାୟ ଅନ୍ତର୍ଗତ—କିପରି ଶିକ୍ଷକ ହେଲି, ଶିକ୍ଷକତା ଯୋଗୁ ଅପମାନ, ଶିକ୍ଷକତାର ଆନନ୍ଦ ଓ ଗୌରବ ; ଚତୁର୍ଥ ଅଧ୍ୟାୟ ଅନ୍ତର୍ଗତ— ପିଏଚ୍. ଡି ର ପ୍ରାସଙ୍ଗିକତା, ଛ-ଇନ୍‌ଫିମେଣ୍ଟର କାହିଆ, ଲେଖକର ତିନି ଜନ୍ମ ।

ଲେଖକର ତିନି ଜନ୍ମ ଶୀର୍ଷକରେ ସେ କହିଛନ୍ତି, "ଏଇ ଲେଖକର ଏଇ କ୍ଷୁଦ୍ର ଜୀବନରେ ତାର ତିନଟି ଜନ୍ମାନ୍ତର ଘଟିଯାଇଛି ବୋଲି ସେ ମନେକରେ । ଥରେ ତ ମା ଜନ୍ମ ଦେଇଥିଲେ । ତାର ଦ୍ୱିତୀୟ ଜନ୍ମ ଘଟିଲ ପ୍ରକୃତରେ ଇଂଲଣ୍ଡ-ପ୍ରବାସ ଫଳରେ । ତୃତୀୟ ଜନ୍ମାନ୍ତର ଦେଇ ସେ ଯାଉଛି ଏଇ ବର୍ତ୍ତମାନ, ଗଙ୍ଗାଧର ମେହେର କଲେଜ ଗୁଡ଼ିଲା ପରଠାରୁ, ଜୀବନର ଶେଷ ପାଦରେ, ଏ ଦେଶ ଓ ଜାତି ଓ ମନୁଷ୍ୟ ନାମକ ପ୍ରାଣୀକୁ ପ୍ରଥମ କରି ଘନିଷ୍ଠ ଭାବରେ ଜାଣିବା ପରେ ।× ×"

ପଞ୍ଚମ ଅଧ୍ୟାୟରେ ସେ 'ଅଜ୍ଞାତ ହସ୍ତର ଆଶୀର୍ବାଦ' ଶୀର୍ଷକରେ କହନ୍ତି, "× × ବିଧାତା ଆମକୁ ଯାହା ଦିଅନ୍ତି କେବଳ ନୁହେଁ, ସେ ଯାହା ନ ଦିଅନ୍ତି, ସେଥିପାଇଁ ମଧ୍ୟ ଆମେ କୃତଜ୍ଞ ହେବାର କଥା ।× × ଏ ମତ ମୋ ନିକଟରେ ଆଜ କେବଳ ଅପରିବର୍ତ୍ତିତ ନୁହେଁ, ଦୃଢ଼ତର ଓ ଗଭୀରତର ।" ଉକ୍ତିର ମାନସିଂହଙ୍କ ଏହି ଦାର୍ଶନିକ ତଥ୍ୟ ପ୍ରତ୍ୟେକ ଈଶ୍ୱରବିଶ୍ୱାସୀଙ୍କ ପକ୍ଷରେ ଏକ ମହାମନ୍ତ୍ରତୁଲ୍ୟ ।

ସପ୍ତମ ଅଧ୍ୟାୟ ବର୍ଣ୍ଣିତ ମଧ୍ୟପ୍ରଦେଶରେ ଓଡ଼ିଆ ସଂସ୍କୃତି, ଗଡ଼ଜାତର ପ୍ରାକୃତିକ ସୁଷମାରେ ଡକ୍ଟର ମାନସିଂହଙ୍କର ସ୍ୱଦେଶ-ପ୍ରୀତି ପ୍ରତିଫଳିତ । ସେହିପରି ଅଷ୍ଟମ ଅଧ୍ୟାୟ ଅନ୍ତର୍ଭୁକ୍ତ 'ସଂସ୍କୃତ ଓ ସଂସ୍କୃତି'ରେ ସେ ଭାରତୀୟ ପରଂପରାର ପୁନରାବୃତ୍ତି ଓ ଏଥିପ୍ରତି ତାଙ୍କର ସମର୍ଥନ ଜ୍ଞାପନ କରିଛନ୍ତି ।

ଦଶମ ଅଧ୍ୟାୟରେ ସେ ସାଂପ୍ରଦାୟିକତାର କଟୁ ସ୍ୱାଦ ଆସ୍ୱାଦନ କରି ଏହାର କଟୁ ସମାଲୋଚନା କରିଛନ୍ତି ।

ପୁସ୍ତକର ଏକାଦଶ, ଦ୍ୱାଦଶ ଓ ତ୍ରୟୋଦଶ ଅଧ୍ୟାୟରେ ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ଡକ୍ଟର ମାୟାଧର ମାନସିଂହଙ୍କର ପୂର୍ଣ୍ଣ-ବ୍ୟକ୍ତିତ୍ୱ-ପ୍ରତିଫଳିତ ଏକ ସଂପୂର୍ଣ୍ଣ ଚିତ୍ର ଦେଖିବାକୁ ମିଳିଥାଏ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, କବି ମାନସିଂହଙ୍କ ସମ୍ବଲପୁର ଅବସ୍ଥାନକାଳୀନ ସମୟ ତାଙ୍କ ଜୀବନର ସୁବର୍ଣ୍ଣ-ଯୁଗ ବୋଲି ସେ ସ୍ୱୀକାର କରିଛନ୍ତି । ଏହି ଅଧ୍ୟକ୍ଷ ଜୀବନରେ ସେ ନିଜର ବହୁବିଧ କଳ୍ପନାକୁ ରୂପାୟିତ କରିବାରେ ସମର୍ଥ ହୋଇଥିଲେ ଓ ମେହେର କଲେଜକୁ ଆଦର୍ଶ କଲେଜ ରୂପେ ପରିଚିତ କରାଇ ପାରିଥିଲେ । ଶିକ୍ଷାକ୍ଷେତ୍ର ସହିତ ସଂପୃକ୍ତ ପ୍ରତ୍ୟେକ ବ୍ୟକ୍ତି ନିମନ୍ତେ ଏହା ପ୍ରଣିଧାନଯୋଗ୍ୟ ।

ଚତୁର୍ଦ୍ଦଶ ଅଧ୍ୟାୟରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଓଡ଼ିଆ ଏନ୍‌ସାଇକ୍ଲୋପିଡ଼ିଆ, ଓଡ଼ିଶା କଲେଜ୍ ଅବ୍ ଆର୍ଟସ୍ ଏଣ୍ଡ-ସାଇନ୍ସେସ୍, ଆକାଡ଼େମୀର ଆକାଡ଼େମୀତ୍ୱ, ଶିକ୍ଷା ପରୀକ୍ଷା ସଂସ୍କାର, ତିନବର୍ଷିଆ ଡିଗ୍ରୀ ଇତ୍ୟାଦି ବିଷୟରେ ଗୁରୁତ୍ୱପୂର୍ଣ୍ଣ ଆଲୋଚନା ଉପସ୍ଥାପନ କରାଯାଇଛି ।

ପଞ୍ଚଦଶ ଅଧ୍ୟାୟରେ ସେ ବିଶ୍ୱବିଦ୍ୟାଳୟ ଡିଗ୍ରୀ, ଓଡ଼ିଆରେ ରିସର୍ଚ୍ଚ, ମାଷ୍ଟର ଅବ୍ ଲିଟରେଚର ଡିଗ୍ରୀର ତାତ୍ପର୍ଯ୍ୟ ସମ୍ପର୍କରେ

ସୂଚନା ଦେବା ସଙ୍ଗେ ସଙ୍ଗେ ଅପାତ୍ର ହାତରେ ଏହା ପଡ଼ିଲେ କି ପ୍ରକାର ବିଷମୟ ପରିଣତି ଘଟିପାରେ, ତାର ଆଲୋଚନା କରିଅଛନ୍ତି ।

ସପ୍ତଦଶ ଅଧ୍ୟାୟରେ ସେ ଶିକ୍ଷାମନ୍ତ୍ରୀଙ୍କ ଅନ୍ତର୍ଗୃହ, କାମଳ ସାମ୍ବାଦିକତା ସଂପର୍କରେ ପ୍ରତ୍ୟକ୍ଷ ଅନୁଭୂତିର ଚିତ୍ର ଉପସ୍ଥାପନ କରିଅଛନ୍ତି ।

ବିଂଶ ଅଧ୍ୟାୟ ବର୍ଣ୍ଣିତ ମାତୃବୋଧ ଓ ରୁଚିବୋଧ, ମନ୍ତ୍ରୀଙ୍କ ଅଭିଯୋଗ, ମନ୍ତ୍ରୀଙ୍କୁ ଚ୍ୟାଲେଞ୍ଜ, ମନ୍ତ୍ରୀଙ୍କର ବଚନମୂଲ୍ୟ, ଡି.ପି.ଆଇ.ଙ୍କ ପ୍ରତିଶ୍ରୁତି ଓ ସୁପାରିଶ୍ ଏବଂ ମନ୍ତ୍ରୀଙ୍କ ଅନୁଦାର ସିଦ୍ଧାନ୍ତ ସଂପର୍କରେ କେତେକ ଅପ୍ରିୟ ସତ୍ୟକଥା ପରିବେଷଣ କରି ପାଠକପାଠିକା-ମାନଙ୍କ ମନରେ ଚାଞ୍ଚଲ୍ୟ ସୃଷ୍ଟି କରିଛନ୍ତି ।

ହୁଏତ ଆମେ ଡକ୍ଟର ମାନସିଂହଙ୍କ ପ୍ରତ୍ୟେକ ଯୁକ୍ତି ସଙ୍ଗେ ଏକମତ ହୋଇ ନ ପାରୁଁ, କିନ୍ତୁ ନିଜ କଥା, ନିଜ ମତ ଉପସ୍ଥାପନ କରି ପାଠକପାଠିକାମାନଙ୍କର ସହାନୁଭୂତି ହାସଲ କରିବା ଦିଗରେ ମାନସିଂହଙ୍କ କଲମ ଯେ ଅତ୍ୟନ୍ତ ସକ୍ଷମ, ଏଥିରେ ଦ୍ୱିରୁକ୍ତିର ଅବକାଶ ନାହିଁ ।

ଯାହା କହିବାକୁ ଅନ୍ୟମାନେ ଭୟ କରିଥାନ୍ତେ, ମାନସିଂହ ନିଜ ବ୍ୟକ୍ତିଗତ ଜୀବନର ନିରାପତ୍ତା, ଚାକିରି କ୍ଷେତ୍ରରେ ପଦୋନ୍ନତି ଓ ଆର୍ଥିକ ବିପର୍ଯ୍ୟୟ ପ୍ରତି ଦୃଷ୍ଟି ନ ଦେଇ, ସବୁକଥା ସ୍ପଷ୍ଟ, ନିର୍ଭୀକ ଓ ସାହସୀ ସୈନିକ ଭାବରେ ବ୍ୟକ୍ତ କରିଦେଇ ଯାଇଛନ୍ତି । ଏବେ ଡକ୍ଟର ମାନସିଂହ ବା ପୁସ୍ତକ ବର୍ଣ୍ଣିତ ଅପରାଧୀ ବ୍ୟକ୍ତି ମଧ୍ୟରୁ ଅନେକେ ଜୀବନରେ ଆଉ ନାହାନ୍ତି; କିନ୍ତୁ ଶିକ୍ଷାବିଦ୍‌ର ଗାଥା ସତ ଅବା ସହସ୍ର ମୁଖରେ ଏ ଜାତିର ଜଣେ ଶିକ୍ଷକ, କବି ଓ ଜାତିପ୍ରାଣ

ବ୍ୟକ୍ତିଙ୍କ ପ୍ରତି କରାଯାଇଥିବା ଅନ୍ୟାୟ, ଅତ୍ୟାଚାର ପ୍ରତି ପ୍ରତିବାଦ ଜ୍ଞାପନ କରୁଛି ।

ଶିକ୍ଷାବିଦ୍‌ର ଗାଥାରୁ ଶିକ୍ଷକ-ଗୁରୁ, ମନ୍ତ୍ରୀ ଓ ସାଧାରଣ ଜନତା, ଡ଼. ପି. ଆଇ.ଙ୍କଠାରୁ ଆରମ୍ଭ କରି ପ୍ରାଇମେରୀ ଶିକ୍ଷକ ପର୍ଯ୍ୟନ୍ତ ସମସ୍ତଙ୍କର କିଛି ନା କିଛି ଜାଣିବାର ଓ ଶିଖିବାର ଅଛି । ରାଜ୍ୟର ଶିକ୍ଷା-ବ୍ୟବସ୍ଥାରେ ସଂସ୍କାର ଆଣିବାକୁ ଚାହୁଁଥିବା ସର୍ବ-ସାଧାରଣ ଓ ଶାସନ-ସଂସ୍ଥା ଏ ପୁସ୍ତକରୁ ଯେ ବିଶେଷ ଭାବରେ ଉପକୃତ ହେବେ, ଏଥିରେ ସନ୍ଦେହ ନାହିଁ ।

ମାନସିଂହଙ୍କ ସ୍ୱର୍ଗୀୟ ଆତ୍ମା ଅବଶ୍ୟ ଖୁସି ହେବ ଯେ, ତାଙ୍କ ପରିକଳ୍ପିତ ଶିକ୍ଷାପଦ୍ଧତିରୁ କେତେକାଂଶ ଅବଲିଳାକ୍ରମେ କାର୍ଯ୍ୟକାରୀ ହେଉଛି ବା ହେବାକୁ ଯାଉଛି । ଡିଗ୍ରୀ ବିଭାଜନ ବ୍ୟବସ୍ଥା, ପ୍ରଚଳିତ ପାଠ୍ୟପୁସ୍ତକର ସମୀକରଣ, ପ୍ରାଇମେରୀ ସ୍କୁଲ୍ କାର୍ଯ୍ୟନିର୍ଘଣ୍ଟରେ ପରିବର୍ତ୍ତନ, କଲେଜ ଶିକ୍ଷା ବ୍ୟବସ୍ଥାରେ ସଂସ୍କାର, ସମ୍ବଲପୁର ବିଶ୍ୱବିଦ୍ୟାଳୟ ଇତ୍ୟାଦି ବିଷୟରେ ସେ ପୁଙ୍ଖାନୁପୁଙ୍ଖ ଭାବେ ଶିକ୍ଷାବିଦ୍‌ର ଗାଥାରେ ଆଲୋଚନା କରିଥିଲେ । ବୈଦିକ୍ ଶିକ୍ଷା ପ୍ରଚଳନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ସେ ଶାସ୍ତି ଭୋଗ କରିଥିଲେ ମଧ୍ୟ ତାଙ୍କର ଜୀବନକାଳ ମଧ୍ୟରେ ସେହି ବ୍ୟବସ୍ଥାରେ ପରିବର୍ତ୍ତନ ହେଲା ।

ପ୍ରତ୍ୟକ୍ଷ ଅନୁଭୂତିରୁ ଦୂରେଇ, ଟେବୁଲ୍ ଚୌକି ଉପରେ ବସି ଖାଲି ଆଦେଶ ଦେଲେ ଯେ ଈପ୍‌ସିତ ଲକ୍ଷ୍ୟ ସାଧନ କରାଯାଇ ପାରେ ନାହିଁ, ସେ କଥା ମାନସିଂହ ବାରମ୍ବାର ବୁଝାଇ କହିଛନ୍ତି । ଶିକ୍ଷାକ୍ଷେତ୍ରରେ ବହୁ ବର୍ଷ କଟାଇ ଦେଇଥିବା ଶିକ୍ଷକ ମାନସିଂହଙ୍କ

'ଶିକ୍ଷାବିତ୍‌ର ଗାଥା' ଶିକ୍ଷାପଦ୍ଧତି ଓ ସମସ୍ୟାବଳୀର ସନ୍ତୋଷଜନକ ସମାଧାନ ପାଇଁ ଯେ ଏକାନ୍ତ ଆବଶ୍ୟକୀୟ, ଏଥିରେ ସନ୍ଦେହ ନାହିଁ ।

---

## : କବି ମାନସିଂହଙ୍କ ସୃଷ୍ଟିର ପୃଷ୍ଠଭୂମି :

କବି ମାୟାଧର ମାନସିଂହ ଓଡ଼ିଶାର ଶିକ୍ଷା, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ସୁଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ଓତଃପ୍ରୋତ ଭାବରେ ଜଡ଼ିତ ଥିଲେ ।

ସୁଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ସେ ନିଜର ବଳିଷ୍ଠ ଲେଖନୀ ମାଧ୍ୟମରେ ଏ ଦେଶର ସାହିତ୍ୟକୁ ବିଭିନ୍ନ ଦିଗରୁ ଯେପରି ସମୃଦ୍ଧ ଓ ଋଦ୍ଧିମନ୍ତ କରିଛନ୍ତି, ତାହାର ପଟାନ୍ତର ନାହିଁ ।

ତାଙ୍କର ଗୀତିକବିତା, କଥା ବା ଗାଥାକବିତା, ଚତୁର୍ଦ୍ଦଶପଦୀ କବିତା, ବ୍ୟଙ୍ଗ କବିତା, କାବ୍ୟ, ନାଟକ, କାବ୍ୟ-ନାଟିକା, ସମୀକ୍ଷାଧର୍ମୀ ପ୍ରବନ୍ଧ, ସାହିତ୍ୟର ଇତିହାସ, ଶିକ୍ଷାପଦ୍ଧତି ସଂପର୍କୀୟ ନିବନ୍ଧ, କଳା ଓ ସଂସ୍କୃତି ସମ୍ବନ୍ଧୀୟ ପ୍ରବନ୍ଧମାଳା ଏ ଦେଶର ସାହିତ୍ୟରେ ମୌଳିକ ଚେତନା ପ୍ରବାହ ସୃଷ୍ଟି କରିଛି । ଲେଖକ, ଶିକ୍ଷକ ଓ ପାଠକବର୍ଗ ତାଙ୍କ ରଚନାବଳୀରୁ ବହୁଧା ପ୍ରଭାବିତ । ଜାତି ପ୍ରତି ତାଙ୍କର ଦାନ ଆଜି ତାଙ୍କୁ ଓଡ଼ିଆ ସାହିତ୍ୟରେ ଅମର କରିଛି ।

ପୃଷ୍ଠଭୂମି:—ମାନସିଂହଙ୍କ ସୃଷ୍ଟି ପ୍ରତିଭାର ବିଚାର ଆଲୋଚନା କଲାବେଳେ ତାଙ୍କ ରଚନା-କାଳକୁ ନିର୍ଭୁଲ ଭାବରେ ସ୍ମରଣ କରିବାକୁ ହେବ ।

କଲେଜ-ଜୀବନର ଆରମ୍ଭରେ ସେ କବି ଭାବରେ ପରିଚିତ ହୋଇଥିଲେ ଓ କଲେଜ ପଢ଼ା ଶେଷ କଲାବେଳକୁ ପ୍ରତିଷ୍ଠା ପାଇ ସାରିଥିଲେ ।

ଏଠାରେ ସ୍ମରଣ କରାଯାଇପାରେ ଯେ, ୧୯୨୭ ମସିହାରେ ସେ ମାଟ୍ରିକ୍ ପାଶ୍ କଲେ ଓ ଆଇ. ଏ. ପଢ଼ିବା ପାଇଁ କଲେଜରେ ଆଡ଼ମିସନ୍ ନେଲେ । ସେତେବେଳେ ରେଭେନ୍‌ସା କଲେଜ ଓଡ଼ିଶାର ଏକମାତ୍ର କଲେଜ ଥିଲା । ସେ ପଶ୍ଚିମ ଛାତ୍ରାବାସରେ ରହୁଥିଲେ । ୧୯୩୦ ମସିହାରେ ଇଂରାଜୀରେ ଅନର୍ସ ପାଇ ସେ ବି. ଏ. ପାଶ୍ କରିଥିଲେ ।

'ରାଜକବି'ର ପ୍ରଥମ ପ୍ରକାଶକାଳ ୧୯୨୮ ମସିହା । ଏହା କଟକ ସତ୍ୟବାଦୀ ପ୍ରେସରେ ମୁଦ୍ରିତ ହୋଇଥିଲା ଓ ପ୍ରଗତି ସଂଘ ଦ୍ୱାରା ପ୍ରକାଶିତ ହୋଇଥିଲା ।

କିନ୍ତୁ ଏହାର ଭୂମିକାରେ କବି ଲେଖିଛନ୍ତି, 'ଏ ଲେଖା ପ୍ରାୟ ତିନି ବର୍ଷ ତଳର' ବୋଲି । ତେଣୁ ଏହା ୧୯୨୫ ମସିହାରେ ଲେଖାଯାଇଥିବା ସମ୍ଭବ ।

କବି ପଦ୍ମଚରଣ ପଟ୍ଟନାୟକ ଏ ପୁସ୍ତକର ଅଭିମତ ଦେଇ କହନ୍ତି, "ତମ ବହିର କଳ୍ପନା ଓଡ଼ିଶାରେ ଗୋଟିଏ ନୂଆ କଥା । ଏ ଧରଣର ସୃଷ୍ଟି କେବଳ ଦୃଶ୍ୟକାବ୍ୟରେ କାହିଁକି, ଆମ ଦେଶର ଆଧୁନିକ ସାହିତ୍ୟର କୌଣସି ବିଭାଗରେ ଏତେ ସୁସ୍ପଷ୍ଟ ଓ କବିତ୍ୱପୂର୍ଣ୍ଣ ଭାବରେ ଫୁଟିଥିବାର ମୁଁ ଦେଖି ନାହିଁ । (ଉତ୍କଳସାହିତ୍ୟ, ୧୯୨୮ ସଂଖ୍ୟାର ଗୋଟିଏ ସ୍ୱତନ୍ତ୍ର କ୍ଷୁଦ୍ର ବିଜ୍ଞାପନ ।)

'କୋଣାର୍କ' କୋଣାର୍କ ଗୀତିକାବ୍ୟର ସର୍ବପ୍ରଥମ କବିତା । ଏ କବିତା 'ଲେଖକ ଶ୍ରୀ'—ନାମରେ 'ବାରୁଣୀ' ଆଷାଢ଼ ୧୩୩୩ ଜୁନ୍ ମାସ, ୧୯୨୬ ମସିହାରେ ପ୍ରକାଶ ପାଇଥିଲା । ସମ୍ଭବତଃ, ଏହାହିଁ କବି ମାନସିଂହଙ୍କ ସର୍ବପ୍ରଥମ ପ୍ରକାଶିତ କବିତା ।

ଏହି ଚାରିବର୍ଷ ମଧ୍ୟରେ (୧୯୨୬ ଠାରୁ ୧୯୩୦) ଉତ୍କଳ-ସାହିତ୍ୟରେ ପ୍ରକାଶିତ କବିତାବଳୀ ହେଲେ—ବାରବାଟୀ (ନଭେମ୍ବର ୧୯୨୬), କବିର ନିମନ୍ତ୍ରଣ (ଫେବୃଆରୀ ୧୯୨୭), ପ୍ରାବୃଟ ସମ୍ଭାଷଣ (ଅଗଷ୍ଟ ୧୯୨୭), ଅନୂଢ଼ା (ନଭେମ୍ବର ୧୯୨୭), ତରୁଣ କବିର ଆଶା (ଏପ୍ରିଲ ୧୯୨୮), ଗୋପ ତର୍ପଣ (ଜୁନ ୧୯୨୮), ନିଦ୍ରିତ ଭଗବାନ (ନଭେମ୍ବର ୧୯୨୮), ପ୍ରଣୟୀ (ଜାନୁଆରୀ ୧୯୨୯), ପ୍ରେମର ପରିଣାମ (ମାର୍ଚ୍ଚ ୧୯୨୯), ସାଧବ-ଝିଅ (ମେ ୧୯୨୯, ଦକ୍ଷିଣା ପ୍ରାନ୍ତ (ଅଗଷ୍ଟ ୧୯୨୯), ମହାନଦୀରେ ଜ୍ୟୋତ୍ସ୍ନାବିହାର (ଅକ୍ଟୋବର ୧୯୨୯), ଯଥାସ୍ଥାନ (ନଭେମ୍ବର ୧୯୨୯) ।

ତାଙ୍କର 'ସହକାର' ସାହିତ୍ୟ ପତ୍ରିକାରେ ପ୍ରକାଶିତ କବିତାବଳୀ ହେଲା—'ରୂପସୀର ପୂଜା' (ଅଗଷ୍ଟ ୧୯୨୮), 'ଉପେକ୍ଷିତା' ଏକ ଦୀର୍ଘ ଅମିତ୍ରାକ୍ଷର କବିତା (ଅଗଷ୍ଟ, ସେପ୍ଟେମ୍ବର ଓ ଅକ୍ଟୋବର ୧୯୨୮) ଇତ୍ୟାଦି ।

ସେତେବେଳେ 'ଉତ୍କଳ-ସାହିତ୍ୟ'ର ସୁଯୋଗ୍ୟ ସମ୍ପାଦକ ଥିଲେ ଶ୍ରୀ ବିଶ୍ୱନାଥ କର । ସେ ମାନସିଂହଙ୍କ ଭିତରେ ଉଜ୍ଜ୍ୱଳ ପ୍ରତିଭାର ସନ୍ଧାନ ପାଇ ତାଙ୍କ ରଚିତ କବିତାକୁ ନିଃସଙ୍କୋଚ ଭାବରେ ନିଜ ପତ୍ରିକାରେ ସ୍ଥାନ ଦେଲେ ।

ଇତ ମାନସିଂହଙ୍କ କବିତାର ବୈଶିଷ୍ଟ୍ୟ ହେଲା ଅନୁପମ ରସ, ଛନ୍ଦ ଓ ଶୈଳୀ । ସେଥିପାଇଁ ପାଠକପାଠିକାମାନେ ତାଙ୍କୁ ସ୍ୱାଗତ ଜଣାଉଥିଲେ ।

କିନ୍ତୁ ପରମ୍ପରାଠାରୁ ଦୂରେଇ ଯାଇଥିବା ହେତୁ, ମାନସିଂହ ଓ ତାଙ୍କର ପରମ ପୃଷ୍ଠପୋଷକ ବିଶ୍ୱନାଥ କର ଅସନ୍ତୁଷ୍ଟ ଗୋଷ୍ଠୀର ଟାରଗେଟ ହେଲେ । ମାନସିଂହଙ୍କୁ ନିନ୍ଦାରେ ପୋତି ଦିଆଗଲା । ସେ ମନକଷ୍ଟରେ ଲେଖିଲେ, "ନର୍ମମ ଖାଲି ଖୋଜ ଅପରାଧ; ସୃଷ୍ଟି କରିବ ମିଛ ଅପବାଦ ।"

ଅପବାଦରେ କବିଙ୍କର ଲେଖନୀ ଅଟକିଲା ନାହିଁ । ସେ ସକଳ ନିନ୍ଦା ଓ ଅପଯଶକୁ 'ନୀଳକଣ୍ଠ ବିଷ ପାନ କରି ହଜମ କରିଦେଲା ପରି' ନିର୍ବିକାର ଭାବରେ ଗ୍ରହଣ କରିନେଲେ ।

କବିଙ୍କର 'ହେମଶସ୍ୟ' ପୁସ୍ତକ ପ୍ରକାଶ ପାଇବା ପରେ ତାରି ମୁଖବନ୍ଧ ପୁନର୍ବାର ଆଲୋଡ଼ନ ସୃଷ୍ଟି କଲା । ତହିଁରେ ଲେଖାଥିଲା, "ମାୟାଧର ନାମରେ ଜଣେ କବି ଥିଲେ । ତାଙ୍କ କବିତା ଆଦର ପାଇଥିଲା, ରମ୍ୟ ଲଳିତ କବିତା ଭାବରେ ଖ୍ୟାତି ଅର୍ଜନ କରିଥିଲା । ମାତ୍ର କେତେକ ତଥାକଥିତ ମିତ୍ରବାଦୀଙ୍କର ତାଡ଼ନାରେ ଜର୍ଜରିତ ହୋଇ କବି ସହର ଗୁଡ଼ି ବାହାରି ଗଲେ ନିଭୃତ ପଲ୍ଲୀକୋଳକୁ । ସେଠାରେ ସେ ଆତ୍ମହତ୍ୟା କଲେ । ମୁଁ ଯାଇଥିଲି କବିବନ୍ଧୁଙ୍କର ସେଇ ନିଭୃତ ନିବାସକୁ । ଦେଖିଲି, ଏଣୁତେଣୁ ଗୁଡ଼ାଏ କବିତା ଛିନ୍ନଭିନ୍ନ ହୋଇ ଘରସାରା ପଡ଼ି ରହିଛି । କବିଙ୍କର ସେଇ ଲେଖାଗୁଡ଼ିକ ସଂଗ୍ରହ କରି ମୁଁ ଏ କବିତାଗୁଚ୍ଛଟିରେ ପ୍ରକାଶ କରୁଛି ।"

ଏହି ମୁଖବନ୍ଧରୁ କବିଙ୍କର କବିତା ପ୍ରତି ଦେଖାଦେଇଥିବା ତତ୍କାଳୀନ ମନୋଭାବ ସୁସ୍ପଷ୍ଟ ।

କବିଙ୍କର ଆଦ୍ୟ ଜୀବନର କବିତା ସବୁ ଥିଲା ଉଦ୍ଦାମ ଯୌବନର ଭାବୋଚ୍ଛ୍ୱାସ । ସେ କବିତାରାଜ୍ୟରେ ପ୍ରେମ ଓ ପ୍ରେମିକାର ପ୍ରତିଷ୍ଠା ଗଢ଼ିଲେ । ଉକ୍ତମାଂସଧାରିଣୀ ପ୍ରେମିକାର ସ୍ତୁତି ଓ ଜୟଗାନ କଲେ । କିନ୍ତୁ ସେଥିପାଇଁ ସାମାଜିକ ଜୀବନ ପ୍ରସ୍ତୁତ ନ ଥିଲା । ତେଣୁ ସେ ସମାଲୋଚନାର ଶରବ୍ୟ ହେଲେ ।

ସେ ଯେଉଁ ସମୟରେ କବିତା ଲେଖିବା ଆରମ୍ଭ କଲେ, ସେତେବେଳେ ସବୁଜ ସାହିତ୍ୟ ଗୋଷ୍ଠୀର କବିମାନେ ସୁପ୍ରତିଷ୍ଠିତ । ସେମାନଙ୍କ ଲେଖାରେ ସାହିତ୍ୟବଜାର ସରଗରମ । ବଙ୍ଗଦେଶରୁ ଆମଦାନି କରାଯାଇଥିବା ଏହି ସବୁଜ ଚିନ୍ତାଧାରା ଓଡ଼ିଆ ସାହିତ୍ୟରେ ସୁପ୍ରତିଷ୍ଠିତ । ଏହି ସବୁଜ ଚିନ୍ତାଧାରା କ୍ଷିପ୍ରଗତିରେ ପ୍ରବାହିତ ହେଲାବେଳେ ତରୁଣ କବି ମାନସିଂହ ହଠାତ୍ ମାନବୀୟ ଚିନ୍ତା-ଧାରାକୁ ଭାବପ୍ରବଣତାରେ ରସାଣିତ କରି ନିର୍ଭୟ ନିଃସଙ୍କୋଚ-ଭାବରେ ସାହିତ୍ୟରାଜ୍ୟରେ ପରିବେଷଣ କଲେ ।

ଅବଶ୍ୟ ସେତେବେଳେ ମାନସିଂହ ପୂର୍ଣ୍ଣ ଯୁବକ । ମନ ଭିତରେ ଅନେକ ସ୍ୱପ୍ନ, ଅନେକ କଳ୍ପନା । ମନୋବଳ ବି ଦୃଢ଼ । ତେଣୁ ସେ ନୂତନ ଯୁଗର ବାର୍ତ୍ତାବହ ଭାବରେ ନୂତନ ଚିନ୍ତାଧାରା ପରିବେଷଣ କରିବା ସିଦ୍ଧାନ୍ତ ଗ୍ରହଣ କଲେ । କିନ୍ତୁ ସେ କି କେବେ କଳ୍ପନା କରିଥିଲେ ଯେ, ଯାହା ଜୀବନର ଏକାନ୍ତ ସତ୍ୟ, ତାକୁ ଖୋଲାଖୋଲି ଭାବରେ ପ୍ରକାଶ କଲେ ତତ୍କାଳୀନ ସାହିତ୍ୟରଥୀମାନେ କ୍ଷୁବ୍ଧ ହେବେ ?

'ଧୂପ' କବିତା ଗ୍ରନ୍ଥର ଆଦ୍ୟ କବିତା 'ତରୁଣ କବିର ଆଶା' ଉତ୍କଳସାହିତ୍ୟ ପତ୍ରିକାରେ ପ୍ରଥମ କବିତା ଭାବରେ ଯେତେବେଳେ ପ୍ରକାଶ ପାଇଗଲା, ସେତେବେଳେ ସାହିତ୍ୟସଂସାରରେ ଏକ

ବିରାଟ ଝଞ୍ଜା ବୋହିଗଲା । କବି ମାନସିଂହଙ୍କୁ ବହୁ ଭର୍ତ୍ସନା ସହ୍ୟ କରିବାକୁ ପଡ଼ିଲା । ଅନ୍ୟ ଏକ ମାସିକ ପତ୍ର ମନ୍ତବ୍ୟ ଦେଲେ, "ଧିକ୍ ତୁମକୁଁ ତରୁଣ କବି, ତୁମ ଜୀବନରେ ଆଜି କୌଣସି ଭଲ ଜିନିଷ ମିଳିଲା ନାହିଁ ।" ଉତ୍କଳସାହିତ୍ୟର ସୁଯୋଗ୍ୟ ସମ୍ପାଦକ ବିଶ୍ୱନାଥ କରଙ୍କୁ 'ବାର୍ଦ୍ଧକ୍ୟରେ ତାରୁଣ୍ୟର ପ୍ରାବଲ୍ୟ' ବୋଲି ନିନ୍ଦା କରାଗଲା ।

ଅନ୍ୟ କେହି ହୋଇଥିଲେ ଆଉ କବିତା ଲେଖିବା ତ ଦୂରର କଥା, କଲମ ମଧ୍ୟ ଧରି ନ ଥାନ୍ତେ । କିନ୍ତୁ ମାନସିଂହ ସତ୍ୟ ଓ ସୌନ୍ଦର୍ଯ୍ୟର ଶାଶ୍ୱତ ପୂଜାରୀ ରୂପେ ସର୍ବଦା ସତ୍ୟ ସୌନ୍ଦର୍ଯ୍ୟର ହିଁ ଉପାସନା କରି ଚାଲିଲେ ।

କାରଣ ସେ କ୍ରମେ ଉପଲବ୍ଧି କଲେ ଯେ, ଜୀବନର ଯେ କୌଣସି କ୍ଷେତ୍ରରେ ପରମ୍ପରାକୁ ଲଙ୍ଘନ କରି ମାଡ଼ିଚାଲିଲେ ତାକୁ ବହୁ ନିର୍ଯ୍ୟାତନା ଭୋଗ କରିବାକୁ ପଡ଼ିଥାଏ । ସତ୍ୟର ପୂଜାରୀ ହୋଇଥିବାରୁ 'ଯୀଶୁ' କ୍ରୁଶ ବିଦ୍ଧ ହେଲେ, 'ସକ୍ରେଟିସ' ବିଷପାନ କରି ମୃତ୍ୟୁବରଣ କଲେ, ଇଂରାଜୀ କବି 'ସେଲି' ପାଗଳ ଆଖ୍ୟା ପାଇଲେ ।

'ଧୂପ' ହେଲା ପ୍ରେମ ଓ ପ୍ରଣୟର ମହାନ୍ ଗୀତିକାବ୍ୟ ।

'ଧୂପ' ହେଲା ପ୍ରତି ତରୁଣତରୁଣୀଙ୍କର 'ଗୀତା', 'ବାଇବେଲ୍' ।

ଏହା ବ୍ୟକ୍ତି-ଚେତନାର ପ୍ରତୀକ ନ ହୋଇ ହେଲା 'ଗୋଷ୍ଠୀ-ଚେତନା'ର ପ୍ରତୀକ ।

'ଧୂପ' ପୂର୍ବରୁ ଓଡ଼ିଆ ଭାଷାରେ ଅନେକ ପ୍ରେମ-କବିତା ଓ କାବ୍ୟ ରଚିତ ହୋଇଥିଲା । 'ଧୂପ' ପରେ ମଧ୍ୟ ଅନେକ ଶୃଙ୍ଗାର

ରସାତ୍ମପ୍ଧୀ କବିତା ଲେଖାହେଲା । କିନ୍ତୁ 'ଧୂପ'ର ସୁରଭି ଏ ଦେଶର ଜନମାନସକୁ ଚିରଦିନ ପାଇଁ ସୁରଭିତ କଲା ।

ମଧ୍ୟଯୁଗ ପୂର୍ବରୁ କାବ୍ୟନାୟିକାମାନେ ମାଂସରକ୍ତଧାରିଣୀ ନାରୀ ନ ଥିଲେ । ସେମାନଙ୍କ ମଧ୍ୟରେ ଦେବୀତ୍ୱ ବା ଦାନବୀତ୍ୱ ଆରୋପ କରିଯାଉଥିଲା । ସେମାନଙ୍କ ସଙ୍ଗରେ ରାଜା, ଜମିଦାର କନ୍ୟାମାନେ ମିଶି ଓଡ଼ିଆ କାବ୍ୟକୁ କଂଭୂତଳମାକାର କରି ଦେଇଥିଲେ । ଗୌଡ଼ୀୟ ବୈଷ୍ଣବ ଧର୍ମର ଆଧାର, ନାୟକପ୍ରବର ଶ୍ରୀକୃଷ୍ଣ ଓ ସିଦ୍ଧଶ୍ରେଷ୍ଠ ନାୟିକା ରାଧା ଅପ୍ରାକୃତ ପ୍ରେମର ବାହକ ଥିଲେ । ଭଞ୍ଜଙ୍କ ନାୟିକା ଲାବଣ୍ୟବତୀ ଯଦିଓ ବିବାହ ପୂର୍ବରୁ ପ୍ରେମୋନ୍ମତ୍ତ ଥିଲା, ତଥାପି ତାହା ଥିଲା ଚନ୍ଦ୍ରଭାନୁଙ୍କ ପତ୍ନୀତ୍ୱର ପୂର୍ବରାଗ ମାତ୍ର ।

କ୍ରମେ ଫ୍ରୟେଡୀୟ ଚେତନା ବିଶ୍ୱସାହିତ୍ୟର ଚିନ୍ତାଧାରାରେ ବିପ୍ଳବର ସୂତ୍ରପାତ କଲା । ପ୍ରେମ, ପ୍ରଣୟ ଓ ପ୍ରଣୟାନୁଭୂତି ସାହିତ୍ୟର ଏକ ଅବିଚ୍ଛେଦ୍ୟ ଅଙ୍ଗ ପାଲଟିଗଲା ।

ମାନସିଂହଙ୍କ ସାମାନ୍ୟ ପରରୁ ଓଡ଼ିଆ ସାହିତ୍ୟରେ ସବୁଜ-ଗୋଷ୍ଠୀ ପ୍ରତିଷ୍ଠାଲାଭ କରି ସାରିଥିଲେ । ସେମାନେ ମଧ୍ୟ ନାରୀକୁ ପ୍ରେମିକା ରୂପେ ଗ୍ରହଣ କରିବାକୁ ପ୍ରସ୍ତୁତ ହେଉଥିଲେ । ସେହି ସବୁଜଗୋଷ୍ଠୀର କତିପୟ କବି ପ୍ରେମିକାଙ୍କୁ କବିତା କ୍ଷେତ୍ରକୁ ଅବଗୁଣ୍ଠନ ତଳେ ଆଣି କ୍ରୀଡ଼ା କରୁଥିଲେ ।

ଅନ୍ନଦାଶଙ୍କର ରାୟ, ବୈକୁଣ୍ଠନାଥ ପଟ୍ଟନାୟକ ପ୍ରମୁଖ କେତେଜଣ କବିଙ୍କ କଲମରେ ଏହି କାବ୍ୟନାୟିକାମାନେ ସୁନ୍ଦରୀ, ସୁଶ୍ରୀ, ମାର୍ବଲ ମୂର୍ତ୍ତି ମାତ୍ର । ରବୀନ୍ଦ୍ରନାଥଙ୍କ ଭାଷାରେ ଏମାନେ ରୂପକଥାର ପରୀ ଅଥବା 'ଅର୍ଦ୍ଧେକ କଳ୍ପନା ପୁଣି ଅର୍ଦ୍ଧେକ ମାନବୀ' ।

କାରଣ ଉକ୍ତ ମତ ପୋଷଣ କରୁଥିବା ସବୁଜ କବିମାନେ ସମାଜର ତତ୍କାଳୀନ ପରିବେଶ ଓ ପରିସ୍ଥିତିକୁ ଭୟ କରୁଥିଲେ । ସେତେବେଳେ ଆଜକାଲିର ପରିସ୍ଥିତି ନ ଥିଲା । ପ୍ରକାଶିତ ପୁସ୍ତକ ଗୋଟିଏ ହାତରୁ ଉଡିଁ ହଠାତ୍ ଶତାଧିକ ହସ୍ତରେ ପ୍ରବେଶ କରି-ପାରୁ ନ ଥିଲା । ପାଠକ ସଂଖ୍ୟା ସୀମିତ ଥିଲା । ସେହି ପାଠକ-ମାନେ ମଧ୍ୟ କାବ୍ୟକବିତା ଓ ନାୟକନାୟିକାଙ୍କ ସଂପର୍କରେ ନିର୍ଦ୍ଦିଷ୍ଟ ମତପୋଷଣ କରିଥିଲେ । ସେଥିରେ ବ୍ୟତିକ୍ରମ ଦେଖିଲେ ନାସିକା କୁଞ୍ଚନ କରୁଥିଲେ ! କାବ୍ୟକବିତାରେ ସାଧାରଣ ପ୍ରେମିକା ନାୟିକାର ଭୂମିକା ଯେ ଗ୍ରହଣ କରିପାରେ, ଏହା ସେମାନଙ୍କର ଚିନ୍ତାଚେତନାର ବାହାରେ ଥିଲା । 'କାର୍ଯ୍ୟରେ, ଯାହା କିଛି କର, ଗୁପ୍ତରେ ଯାହା କିଛି କୁହ ପଛକେ, ତାକୁ ଲେଖିପକାଅ ନାହିଁ ।' ଏହାହିଁ ଥିଲା ସେମାନଙ୍କର ମତାମତ । କିନ୍ତୁ 'ଧୂପ'ରେ ତାର ବ୍ୟତି-କ୍ରମ ସୃଷ୍ଟି ହେଲା । ଧୂପର ପ୍ରେମିକା ସମାଜର ସମସ୍ତ ପ୍ରକାର ବାଧା-ବନ୍ଧନକୁ ଅତିକ୍ରମ କରି, ଆତ୍ମପ୍ରବଞ୍ଚନା କିମ୍ବା କପଟ ଛଳନାକୁ ମାଟିତଳେ କବର ଦେଇ ପ୍ରେମକ୍ଷେତ୍ରରେ ବିଦ୍ରୋହ ଘୋଷଣା କଲା । ସେ ପ୍ରେମକୁ ପାପ ବୋଲି ନ ଭାବି ସହଙ୍କାର ତଳେ, ନିଜ ପ୍ରେମିକ ଗଳାରେ କରକଙ୍କଣ ଛନ୍ଦିଦେଲା ।

ଏହକୁ ସବୁଜ କବିମାନେ ବା ସହ୍ୟ କରିଥାନ୍ତେ କେମିତି ? ତେଣୁ ପାଟିତୁଣ୍ଡ, ହୋ' ହଲ୍ଲା ହେଲା । କବି ଏଥିପାଇଁ ନିର୍ଯ୍ୟାତିତ ହେଲେ ।

କିନ୍ତୁ ପାଠକପାଠିକାମାନଙ୍କ ମନରେ ମାନସିଂହ ପରିଚିତ ହେଲେ ସତ୍ୟ-ଶିବ-ସୁନ୍ଦରର କବି ଭାବରେ ।

ମାନସିଂହ ଥିଲେ ମାଧୁର୍ଯ୍ୟ ରସର କବି । ସେ ତାଙ୍କର ପୂର୍ବସୂରୀ ପଦ୍ମଚରଣ, ଲକ୍ଷ୍ମୀକାନ୍ତ ପ୍ରମୁଖଙ୍କର ଉପଯୁକ୍ତ ଦାୟାଦ ରୂପେ ନିଜକୁ ସୁପ୍ରତିଷ୍ଠିତ କରିଗଲେ ।

ଓଡ଼ିଆ ସାହିତ୍ୟ-କ୍ଷେତ୍ରରେ ଚଳିତ ଶତାବ୍ଦୀର ଦ୍ୱିତୀୟ ଶତକରେ କାଳିନ୍ଦୀ, ବୈକୁଣ୍ଠ, ଅନ୍ନଦାଶଙ୍କର, ହରିହର ପ୍ରମୁଖଙ୍କ ଆନୁକୂଲ୍ୟରେ ଯେଉଁ 'ସବୁଜଯୁଗ'ର ଅବତାରଣା ହୋଇଥିଲା, ତାହାର ପ୍ରଭାବ ସୀମିତ ହୋଇ ଆସିଲାବେଳକୁ କବି ମାନସିଂହ ଓଡ଼ିଆ ସାହିତ୍ୟର ନୂତନ ବାର୍ତ୍ତାବହ ରୂପେ ଆବିର୍ଭୂତ ହୋଇ ଅତି ଅଳ୍ପ ସମୟ ମଧ୍ୟରେ ନିଜକୁ ପ୍ରତିଷ୍ଠିତ କଲେ ଓ ନିଜ ସୃଷ୍ଟିକୁ ବିଶିଷ୍ଟ ଆସନର ଅଧିକାରୀ କରିପାରିଥିଲେ । ବ୍ୟକ୍ତିଗତ ଭାବରେ ସେ ଥିଲେ ଜଣେ ସମ୍ପୂର୍ଣ୍ଣ ସଂସ୍କାରମୁକ୍ତ ମାନବତାଧର୍ମୀ ମଣିଷ । ତାଙ୍କ ସୃଷ୍ଟି ମଧ୍ୟ ସଂସ୍କାରମୁକ୍ତ ମାନବତାବାଦୀ ହେଲା । ଏହାହିଁ ମାନସିଂହଙ୍କ ବୈଶିଷ୍ଟ୍ୟ ।

## ରୂପ ଓ ପ୍ରଣୟର କବି : ମାନସିଂହ

'ଧୂପ'ର କାବ୍ୟ-ନାୟିକାକୁ ଆତ୍ମ-ପ୍ରବଞ୍ଚନା ଓ ଛଳନାମୁକ୍ତ କରି କବି ଓଡ଼ିଆ ସାହିତ୍ୟର ପରମ୍ପରାକୁ ଭଗ୍ନ କଲେ ଓ 'ପ୍ରେମିକା'କୁ କାବ୍ୟ-ନାୟିକାର ସମ୍ମାନ ଦେଇ ପାଠକପାଠିକା ମହଲରେ ସୁଦୀର୍ଘ ଆଲୋଡ଼ନର ସୂତ୍ରପାତ କରିଥିଲେ । ଧୂପର ନାମହୀନା ନାୟିକା ଓଡ଼ିଆ ସାହିତ୍ୟରେ ହେଲା ପ୍ରଥମ ବିଦ୍ରୋହିଣୀ ନାରୀ, ଯିଏ ମଣିଷର ସହଜାତ ପ୍ରବୃତ୍ତି ପ୍ରେମକୁ ପାପ ବୋଲି ଗୋପନ ନ କରି ମୁକ୍ତକଣ୍ଠରେ ଗାଇନ କଲା,

ଯେ ମାଡ଼ ଗ୍ରୁଡ଼ିଛୁ ତମ ମାଡ଼ ସୁଖ ପାଇଁକି
ମନେ ରଖିବାକୁ ପଣ ତୁମର ନାହିଁ କି ?

(ଧୂପ—'ଆଷାଢ଼ର ଅଭିସାର')

କବି ମାନସିଂହ ତରୁଣ ସମ୍ପ୍ରଦାୟ ଓଡ଼ିଶାର ଅନ୍ତ ଶିକ୍ଷିତ ଘରେ ଓ ପାଠୁଆ ଚତୁଃଚତ୍ୱର ମହଲରେ ପ୍ରସିଦ୍ଧି ଲାଭ କରି ସାରିଥିଲେ । 'ଧୂପ' କବିତା ସଂକଳନ ତାଙ୍କୁ ରୂପ ଓ ପ୍ରଣୟର କବି ଭାବରେ ପ୍ରତିଷ୍ଠିତ କଲା ।

ଶୁଣାଯାଏ, ଆଦ୍ୟ ଯୌବନରେ ସେ କୌଣସି ସୁନ୍ଦରୀ ଯୁବତୀର ରୂପ ଓ ସୌନ୍ଦର୍ଯ୍ୟରେ ବିମୁଗ୍ଧ ହୋଇ ତାର ପ୍ରଣୟ ଲାଭ କରିଥିଲେ । ସେହି ପ୍ରଣୟ ମାୟାଧରଙ୍କ ମନରେ ରଂଗତରଙ୍ଗ ସୃଷ୍ଟି କଲା ଓ ସେ ହେଲେ ଏକ ରୂପ ଓ ପ୍ରଣୟମୁଗ୍ଧ କବି । ତାଙ୍କର ରଙ୍ଗୀନ କବିତାରେ ସେହି ପ୍ରେମ ଓ ପ୍ରଣୟର ଉଜାଣି ପ୍ରବାହ ଦେଖା-ଦେଲା । ତାଙ୍କ କବିତା ଏକ ସ୍ପର୍ଶ-କାତର ପ୍ରାଣର ସ୍ପର୍ଶ ଲାଭ କରି ଜୀବନ୍ତ ହୋଇଉଠିଲା । ସେ ଲୋକଲଜ୍ଜା, ନିନ୍ଦା, ଅପବାଦ ଓ ଆକ୍ରୋଶମୂଳକ ପ୍ରତିବାଦ ସବୁକୁ ଲଂଘନ କରି ଦୃଢ଼ ପଦରେ ଛିଡ଼ା ହେଲେ ଓ ସକଳପ୍ରକାର ପରିସ୍ଥିତିର ମୁକାବିଲା କଲେ । ସେହି ପ୍ରଥମ ପ୍ରେମର ଉଷ୍ମତା ଶେଷ ସମୟ ପର୍ଯ୍ୟନ୍ତ ତାଙ୍କୁ ଉଦ୍‌ବେଳିତ ଓ ଉଦ୍‌ଭାସିତ କରି ରଖିଥିଲା । ତାଙ୍କ ଜୀବନର ଝଡ଼ଝଞ୍ଜା, ଠୋ-ଠୋ ହସ ସବୁ ଅବା ସେହି ବିଗତ ଅତୀତର ସେହି ଅପାଶୋରା ପ୍ରଣୟର ଘୂରିଭରା-ସ୍ମୃତି ରୂପରେ ଦେଖାଦେଇଥିଲା !

ଏ ସମ୍ପର୍କରେ ପ୍ରଖ୍ୟାତ ଗାଳ୍ପିକ ମହାପାତ୍ର ନୀଳମଣି ସାହୁ କହନ୍ତି, "ପାପ-ପ୍ରଣୟ ବେଶିଦିନ ରହେ ନାହିଁ । ଆମ୍ଭେନ୍ଦ୍ରିୟ ପ୍ରୀତି କ୍ଷଣସ୍ଥାୟୀ ଓ ସନ୍ତାପଦାୟକ । ମାତ୍ର ସବୁ ଉତ୍ତମ ପ୍ରେମିକ ପୁରୁଷଙ୍କ ଭଳି ହୃଦୟର ନିଭୃତତମ, ଗଭୀରତମ, ରସାତଳ ପ୍ରଦେଶରେ ଅତି ସଂଗୋପନରେ ଗୋପନୀୟ ଓ ଏକାନ୍ତ ବ୍ୟକ୍ତିଗତ ରୋମାଣ୍ଟିକ୍ ପ୍ରେମକୁ କପରି ଫୁଲ, ତୁଳସୀ, ଚନ୍ଦନ ଓ ଧୂପାଞ୍ଜଳି ଦେଇ ପୂଜା

କରିଯାଏ—ସେ ସାଧନା ଆପଣଙ୍କୁ (ମାନସିଂହଙ୍କୁ) ନିଶ୍ଚୟ ଜଣାଥିଲା।"

ଏହାର କାରଣ ହେଲା, ମାନସିଂହ ପ୍ରଥମେ ଥିଲେ ପ୍ରେମିକ। ପରେ କବି ହେଲେ। ପ୍ରେମ ହେଲା ତାଙ୍କ କବିତ୍ୱର ଉତ୍ସ। ଜଣେ ରୂପସୀ ନାରୀର ସାକାର ରୂପ ଓ ନିରାକାର ରସ-ମାଧୁର୍ଯ୍ୟ ଆହରଣ କରି ସେ ସାର୍ଥକ କବି ଭାବରେ ଦେଖାଦେଲେ। ଦେହରୁ ଦେହାତୀତ ଅବସ୍ଥାକୁ ଉତ୍ତୀର୍ଣ୍ଣ ହେଲେ। ତନ୍ତ୍ର ସାଧନା ତ ଏହି ଶ୍ରେଣୀର! ପରବର୍ତ୍ତୀ ଅବସ୍ଥାରେ ସେ 'କୂଣ' ଲେଖିବାରେ ସମର୍ଥ ହେଲେ। କୂଣ ସନେଟ ଶତକର ପରିପକ୍ୱ ଜୀବନ-ଦର୍ଶନ ଧୂପରେ ନାହିଁ।

ସାଧନା ଓ ସିଦ୍ଧି ମଧ୍ୟରେ ଯେଉଁ ତଫାତ୍, ଧୂପ ଓ କୂଣ ମଧ୍ୟରେ ସେହି ତଫାତ୍। ଗୋଟିଏ ଆଦ୍ୟ ହେଲେ, ଅନ୍ୟଟି ଶେଷ। କିନ୍ତୁ ସାଧନା ସାର୍ଥକ ହେଲେ ସିଦ୍ଧିଲାଭ ଚରିତାର୍ଥ ହୋଇଥାଏ।

ସାଧନା ଅବସ୍ଥାରେ ସିଦ୍ଧିଲାଭର ଅଧିକାରୀ ହେବା ତାନ୍ତ୍ରିକ-ଇତିହାସରେ ଜଣା ନାହିଁ।

କିନ୍ତୁ ମାନସିଂହଙ୍କ ସାଧନା ଅବସ୍ଥାର 'ଧୂପ' ଯେଉଁ ଆସନର ଅଧିକାରୀ, ଜୀବନ-ଦର୍ଶନ ପ୍ରଖ୍ୟାପକ 'କୂଣ' ବିପକ୍ଷିତ କ୍ଷେତ୍ରରେ ଠିକ୍ ସେହି ଆସନର ଅଧିକାରୀ ହେଲା।"

ଏହିଠାରେ ହିଁ ସାଧକ ମାନସିଂହ ଓ ସିଦ୍ଧ ମାନସିଂହଙ୍କ ବୈଶିଷ୍ଟ୍ୟ ପରିଲକ୍ଷିତ।

ଧୂପର ଅନ୍ୟତମ ଆକର୍ଷଣ ହେଲା ଏହାର ଆନ୍ତରିକତା ଓ ଗୀତିମୟତା। ମାଧୁର୍ଯ୍ୟ ଛନ୍ଦରେ ପ୍ରତିଟି କବିତା ମୂର୍ତ୍ତିମନ୍ତ। କବିତାରେ କ୍ଳିଷ୍ଟତା ନାହିଁ, ଗୋପନତା ନାହିଁ କି ଜଟିଳତା ନାହିଁ।

ବଣ୍ୟ ଝରଣା ପରି କଳକଳ, ଛଳଛଳ ନାଦରେ ସେ ଏକମୁହାଁ ହୋଇ ଧାଇଁଛି । ସେ ଧାଇଁଛି ମହାସାଗରରେ ବିଲୀନ ହେବାପାଇଁ ।

ଯେତେ ଅବା ଆତ୍ମା ଦୌଡ଼ୁଛି ପରମାତ୍ମା ସଙ୍ଗେ ମିଳିତ ହେବାପାଇଁ । ଏଭଳି ଅବସ୍ଥାରେ କିଏ ତାର ଗତିରୋଧ କରିବ ? କିଏ ଗତିରୋଧ କରିବାକୁ ବା ସମର୍ଥ ହେବ ?

ଧୂପର ଶେଷପଥ ହେଲା, ମାଟିବାଣୀ ଓ ନୂଆ । ପଥପାର୍ଶ୍ୱରେ କେତେ 'ଉପେକ୍ଷିତା', 'ଜେମା', 'ସାଧବଝିଅ'ର ପଦ 'କଙ୍କଣ' । କେତେ 'ଶୁଭଦୃଷ୍ଟି', କେତେ 'କମଳାୟନ' ।

କବି ମାନସିଂହ ଥିଲେ ଚିରବିପ୍ଳବୀ, ଚିରସଂଗ୍ରାମୀ । ସଂସ୍କାର-ମୁକ୍ତ ମନ ନେଇ ସେ ଜନ୍ମଗ୍ରହଣ କରିଥିଲେ । ସ୍ୱାଧୀନ, ବିପ୍ଳବାତ୍ମକ ସିଦ୍ଧାନ୍ତ ଶୁଣାଇବାକୁ ସେ ଜୀବନରେ କେବେହେଲେ ପଶ୍ଚାଦ୍‌ପଦ ହୋଇ ନାହାନ୍ତି ।

ଧୂପ ମାନସିଂହଙ୍କ ବ୍ୟକ୍ତିଗତ, ସ୍ୱାଧୀନ, ବିପ୍ଳବୀ ଓ ସଂଗ୍ରାମୀ ମନର ଶ୍ରେଷ୍ଠ ପ୍ରତିନିଧି ।

ଧୂପ ଓ ହେମଶସ୍ୟ ଏଇ ଦୁଇ ଶ୍ରେଷ୍ଠ ପ୍ରେମକବିତା ସଂକଳନରେ ବୟସର ଉତ୍ତାପ, ତାରୁଣ୍ୟର ନିଶା, ସ୍ୱପ୍ନର ପ୍ରଗଲ୍‌ଭତା, କଳ୍ପନାର ବର୍ଣ୍ଣାଢ଼୍ୟ ପରିବେଶ ଅଛି । ଏ ଦୁହେଁ କବିମନର ସମାନ ଆବେଗ, ସମାନ ସଂଗୀତ ଓ ଯନ୍ତ୍ରଣାକର ପ୍ରତିନିଧିତ୍ୱ କରିଥାନ୍ତି । ଏହାର ପ୍ରତିଟି କବିତା ପାଠକର ମନକୁ ମୋହାଚ୍ଛନ୍ନ କରିଥାଏ ।

ପରବର୍ତ୍ତୀ କାଳରେ ବହୁ ଲେଖକ-ଲେଖିକା 'ମାୟାଧର-କବିତା'ରେ ଆକୃଷ୍ଟ ହେଲେ ଓ ତାଙ୍କର ରସ, ଛନ୍ଦ ଓ ଶୈଳୀର ଅନୁସରଣ କଲେ ।

ତେଣୁ 'ଧୂପ' ତାଙ୍କ ପ୍ରତିଭା-ପ୍ରତିଷ୍ଠାର ପ୍ରଥମ ସ୍ମାରକୀ ରୂପେ ବିବେଚିତ ହୋଇଥାଏ ଓ ମାନସିଂହ ରୂପ, ପ୍ରଣୟର ସାର୍ଥକ କବି ରୂପେ ବିବେଚିତ ହୋଇଥାନ୍ତି ।

'ଧୂପ'ର ଅନ୍ତର୍ଗତ ତରୁଣ କବିର ଆଶା, ପାପ ଓ ପ୍ରେମ, ପ୍ରଣୟ-ସାଧନା, ଆଷାଢ଼ ଅଭିସାର, ମୌନ ବିଦାୟ, ଗୀତାଞ୍ଜଳୀ, ପ୍ରେମର ଭାଷା, ପ୍ରେମ ଓ ମୃତ୍ୟୁ କବିତାଗୁଡ଼ିକ ଚିରସ୍ମରଣୀୟ । ଏହି କଳନା ଧୂପର ସୌରଭ ପୁଷ୍ପିତା, ପୂଜାରିଣୀ ଓ ସାଧବଝିଅରେ ମଧ୍ୟ ସଂରକ୍ଷିତ ।

ଧୂପର ସ୍ୱର ହେଲା ରୂପ ଓ ଯୌବନର ସ୍ୱର । ଏଥିରେ ପୂର୍ଣ୍ଣୋର୍ମି ନଦୀର ପ୍ରମତ୍ତ ଝଙ୍କାର ମିଶିଛି । ଏହାର ଉଦ୍ଦାମତା, କ୍ଷିପ୍ରତା ଓ ପ୍ରଗଳଭତା ପାଠକମନକୁ ମନ୍ତ୍ରମୁଗ୍ଧ କରିଥାଏ ।

କିନ୍ତୁ 'ହେମଶସ୍ୟ'ରେ ଧୂପର ସେହି ଉଦ୍ଦାମ ସ୍ୱର ନ ଥିଲେ ମଧ୍ୟ ଶରତକାଳୀନ ନଦୀର ଧୀର, ନିର୍ମଳ, ଶୁଦ୍ଧ ପ୍ରବାହ ଦେଖିବାକୁ ମିଳିଥାଏ । ରୂପ ଓ ଅରୂପର ମିଳନ ଚିତ୍ର ଏଠାରେ ସଂରକ୍ଷିତ ।

ସାଧବଝିଅ, ପୂଜାରିଣୀ, ଜେମା, କୋଣାର୍କ, ଶୁଭଦୃଷ୍ଟି, ନିକୃଣ ପ୍ରଭୃତି କାବ୍ୟ, କାବ୍ୟନାଟିକା ଓ ଖଣ୍ଡକାବ୍ୟରେ ମଧ୍ୟ ଆମେ କବି ମାନସିଂହଙ୍କର ରୂପ ଓ ପ୍ରଣୟ ତଥା ପ୍ରଣୟାନୁଭୂତିର ଚିତ୍ର ଦେଖିବାକୁ ପାଇଥାଉଁ ।

କିନ୍ତୁ ଧୂପରେ ଯେଉଁ ଉଦ୍ଦାମ ଓ ପ୍ରଗଳ୍‌ଭତା ଅଛି, ଅନ୍ୟ ଗୀତିମାନଙ୍କରେ ତାହା ନାହିଁ । ଦେହରୁ ମନ ଓ ଆତ୍ମା ସ୍ତରକୁ 'ଧୂପ' ବର୍ଣ୍ଣିତ ପ୍ରେମ ଉତ୍ତୀର୍ଣ୍ଣ ହୋଇଛି । ଅବଶେଷରେ ସେ ଈଶ୍ୱରୀୟ ଚିନ୍ତାରେ ଗଦ୍‌ଗଦ ହୋଇଛନ୍ତି । ସେ କେବଳ ରୂପ ଓ ପ୍ରଣୟର କବି ରୂପରେ ପ୍ରତିଷ୍ଠିତ ନ ହୋଇ ସତ୍ୟ-ଶିବ-ସୁନ୍ଦରର ପୂଜାରୀ ପାଲଟି ଯାଇଛନ୍ତି ।

## : ଭୁଲିବାର ନୁହେଁ :

ସେତେବେଳେ ଡକ୍ଟର ମାନସିଂହ ଗୋଧର ମେଢ଼ର କଲେଜର ଅଧ୍ୟକ୍ଷ । ଆମେ ସବୁ ଛାତ୍ର । ସମସ୍ତେ ସବୁବେଳେ ତାଙ୍କର ଚର୍ଚ୍ଚା କରୁଥାନ୍ତି । ଦିନକୁ ଗୋଟିଏ ଗୋଟିଏ ନୂଆ ନୋଟିସ୍ ବାହାରୁଥାଏ । ଦିନେ ଦୋ'ତାଲା ସିଡ଼ି ଉପରେ ଦୁଇଟି ନୋଟିସ୍ ଝୁଲିଲା । ଲେଖାଥିଲା, 'ଛାତ୍ରମାନଙ୍କ ପାଇଁ' ଓ 'ଛାତ୍ରୀମାନଙ୍କ ପାଇଁ' ତା'ତଳେ ଉପଦେଶାବଳୀ । ବାଁ ପଟେ ଚାଲ, ପାଟିତୁଣ୍ଡ କର ନାହିଁ, ଭଦ୍ର ହୁଅ, ନମ୍ର ହୁଅ, ସମସ୍ତ ମିଳିଲେ ଲାଇବ୍ରେରୀରେ ବସ ଇତ୍ୟାଦି ।

ଛାତ୍ରଛାତ୍ରୀମାନେ ସେ ନୋଟିସ୍ ପଢ଼ିଲେ ଓ ପରସ୍ପର ମୁହଁକୁ ଚାହିଁଲେ । ଆଖିରେ କେମିତି କେମିତି ଭାବ ।

କିନ୍ତୁ ଏ ବହି ଲେଖିଲାବେଳେ, ସେହି ନୋଟିସ୍ କଥା ମନେ-ପଡ଼ି ମାନସିଂହଙ୍କ ଆଗରେ ମୁଣ୍ଡ ନଇଁଯାଉଛି । ତାଙ୍କର ବହୁ ଛାତ୍ରଛାତ୍ରୀ ଏ କଥା ଅବଶ୍ୟ ମନେ ରଖିଥିବେ ।

* * *

ଆଜି ଦିନେ ଅଧ୍ୟକ୍ଷ ମାନସିଂହଙ୍କଠାରୁ ଡାକରା ପାଇ ଭୟାର୍ତ୍ତ ପଦରେ ଯାଇ ତାଙ୍କର କୋଠରି ଭିତରେ ପଶିଲି ଓ ନମସ୍କାର ଜଣାଇ ଟେବୁଲ କଡ଼କୁ ଛିଡ଼ା ହେଲି ।

ହାତରେ ତାଙ୍କର ପକେଟ ନୋଟ୍ ବହି ଓ କଲମ ଥାଏ । କହିଲେ, ବସ !

ମୁଁ ବସିଲି ।

ତା' ପରେ ଦୁଇଟି ଓ ଖାଲି ପ୍ରଶ୍ନ । ତୁମର ନାଁ ଅମୁକ ନାଁ, ରୋଲ୍ ନମ୍ବର ଏଇଆ ତ, ଅମୁକ କ୍ଲାସରେ ପଢ଼ୁଛ ନାଁ, ତୁମ ବାପାଙ୍କ ନାଁ ଏଇଆ !

ସାର୍, ସାର୍ କହି ସମ୍ମତି ଜଣାଉଥାଏ ।

ତା'ପରେ ଅନେକ ଜଟିଳ ପ୍ରଶ୍ନ । କଲେଜ ଆସିଲ କାହିଁକି ? କ'ଣ କରିବ ସ୍ନା'ପରେ ? ଦର୍ଶନ ପଢ଼ିଲେ କ'ଣ କରିବ ? ତୁମେ କ'ଣ ହେବ ବୋଲି ଭାବୁଛ ?—

ମୋର ସମସ୍ତ ଉତ୍ତର ସେ ସଂକ୍ଷେପରେ ଟିପି ନେଉଥାନ୍ତି ।

ତା' ପରେ କହିଲେ, ଯାଅ !

ଝାଳନାଳ ହୋଇ ମୁଁ ଫେରିଲି ।

ପରେ ବୁଝିଲି, କେବଳ ମୋତେ ନୁହେଁ; ଆମ ଉପର ଶ୍ରେଣୀର ପ୍ରାୟ ପ୍ରତ୍ୟେକଙ୍କୁ ଡାକି ମୋରି ପରି ଅନେକ ପ୍ରଶ୍ନ ପଚାରିଛନ୍ତି । ଅଧ୍ୟକ୍ଷ, ତାଙ୍କ କଲେଜରେ ପାଠ ପଢ଼ୁଥିବା ଛାତ୍ର-ଛାତ୍ରୀମାନଙ୍କୁ ପାଖକୁ ଡାକି ପଚାରି ଓ ବ୍ୟକ୍ତିଗତ ପ୍ରଶ୍ନ ପଚାରିବା ଗଙ୍ଗାଧର କଲେଜରେ ନୂଆ କଥା ।

* * *

ଗଣେଶ ପୂଜା ପ୍ରତିବର୍ଷ ଗଙ୍ଗାଧର ମେହେର କଲେଜରେ ଆଡ଼ମ୍ବର ସହକାରେ ପାଳିତ ହେଉଥାଏ ।

ସେତେବେଳେ ଗଙ୍ଗାଧର ମେହେର କଲେଜ ତଳମହଲର ପ୍ରଥମ ଘରଟା ବଏଜ୍ କମନ୍‌ରୁମ୍ ଥାଏ ଓ ତା'ରି ଭିତରେ ପୂଜା ଆୟୋଜନ ହୁଏ ।

ସେ ବର୍ଷ ସବୁ ବର୍ଷ ପରି ଅଧ୍ୟକ୍ଷ ମାନସିଂହଙ୍କୁ ପୁଷ୍ପାଞ୍ଜଳି ଓ ପ୍ରସାଦ ସେବନ ପାଇଁ ଡାକିବାକୁ ଗଲୁ ।

କିନ୍ତୁ ମାନସିଂହ ନିଜ ସଙ୍ଗରେ ପତ୍ନୀ ଶ୍ରୀମତୀ ହେମଲତା ମାନସିଂହଙ୍କୁ ନେଇ ପୂଜାସ୍ଥଳୀରେ ହାଜର ହେଲେ । ଦେଖି ଆଶ୍ଚର୍ଯ୍ୟ ହେଲୁ, ଅଧକ୍ଷ ମାନସିଂହଙ୍କ ପରିବର୍ତ୍ତେ ତାଙ୍କ ପତ୍ନୀ ହେମଲତା ମାନସିଂହ ପୁଷ୍ପାଞ୍ଜଳି ଅର୍ପଣ ଓ ପ୍ରସାଦସେବନ କରୁଛନ୍ତି ।

ପରେ ବୁଝିଲୁ, ଅଧକ୍ଷ ମାନସିଂହ ବୌଦ୍ଧଧର୍ମ ଗ୍ରହଣ କରିଛନ୍ତି ।

*　　　*　　　*

ଅନେକ ବର୍ଷ ପରେ ମାନସିଂହଙ୍କ ସଙ୍ଗରେ ଦେଖା ହେଲା 'ସ୍ୱରାଜ୍ୟ' ଅଫିସ୍‌ରେ । ସେତେବେଳେ ସେ ଦୈନିକ ସମ୍ବାଦପତ୍ର ସ୍ୱରାଜ୍ୟର ସମ୍ପାଦକ । ସମ୍ପାଦକୀୟ ପାଇଁ ଏ କାଗଜର ଖ୍ୟାତି କ୍ରମେ ବଢ଼ି ଚାଲିଥାଏ ।

ସେ ଏକ ସ୍ୱତନ୍ତ୍ର କୋଠରିରେ, ସ୍ୱତନ୍ତ୍ର ଟେବୁଲ୍ ଉପରେ ବସି ଲେଖାଲେଖିରେ ବ୍ୟସ୍ତ ଥା'ନ୍ତି । ଟେବୁଲ୍ ଉପରେ ଥାକ ଥାକ ବହି ।

ପ୍ରାୟ ପନ୍ଦର କୋଡ଼ିଏ ମିନିଟ ପରେ ସେ ମୁହଁ ଟେକି ପଚାରିଲେ, "ଆରେ, କେତେବେଳୁ ଆସିଛ ?"

ଏଇ ପନ୍ଦର କୋଡ଼ିଏ ମିନିଟ୍ ହେଲା ।

ସେ ହସିଲେ ଏବଂ ଖାଲି ହସିବାକୁ ଲାଗିଲେ । ପ୍ରାୟ ପାଞ୍ଚ ମିନିଟ୍ ହସିବା ପରେ କହିଲେ ବସ ! ..

ସେତେବେଳେ ପ୍ରକାଶନ କମିଟୀ ତରଫରୁ ଗଙ୍ଗାଧର ସ୍ମରଣିକା ପ୍ରସ୍ତୁତ କରୁଥାଏଁ । ଆବଶ୍ୟକୀୟ ପରାମର୍ଶ ଦେଇ ବିଦାୟ ଦେଲେ ।

*　　*　　*

ଆଜି ବି ଦିନେ —

ସାହିତ୍ୟିକ ବନ୍ଧୁ ରମେଶ ଧଳ ଓ ମୁଁ ଯାଇ ତାଙ୍କୁ ଭୁବନେଶ୍ୱରର ଲୁଇସ୍ ରୋଡ଼ରେ ଥିବା ଭଡ଼ାଘରେ ସାକ୍ଷାତ କଲୁଁ ।

ହାଫପେଣ୍ଟ ଓ ହାଫ୍‌ସାର୍ଟ ପିନ୍ଧି ବେତଚୌକିରେ ବସି ଇଂରାଜୀ ପତ୍ରିକା ଓଲଟାଉଥାନ୍ତି । ପେଣ୍ଟ ଓ ସାର୍ଟ ରଙ୍ଗ ଖାକି । ତହିଁରେ କଳାବୋତାମ ଲାଗିଥାଏ । ସାର୍ଟର ଗଢ଼ଣ ମିଲଟାରୀ ଢଙ୍ଗର । ବଙ୍କାବାଡ଼ିଟା ଦୁଆର କାନ୍ଥରେ ଆଉଜା ହୋଇଥାଏ ।

ଆମେ ତାଙ୍କର ଅତି ନିକଟରେ ଛିଡ଼ା ହୋଇଥିଲେ ବି, ଆଶ୍ଚର୍ଯ୍ୟର କଥା, ସେ ଆମ ଉପସ୍ଥିତି ଉପଲବ୍ଧି କରିପାରି ନ ଥିଲେ । ଆମେ ବି' ତାଙ୍କର ଧ୍ୟାନଭଙ୍ଗ କରିବାକୁ ଚାହିଁଲୁ ନାହିଁ ।

କିଛି ସମୟ ପରେ ସେ ପଢ଼ା ଶେଷ କରି ଆମ ମୁହଁକୁ ଚାହିଁଲେ ଓ ହସ ହସ ମୁହଁରେ ଆମ ସଙ୍ଗରେ ଗପସପ, ଆଲୋଚନା କଲେ ।

ତାଙ୍କର ସ୍ୱାସ୍ଥ୍ୟହାମେଠ'ରୁ ଆରମ୍ଭ କରି ଓଡ଼ିଆ ସାହିତ୍ୟ ପର୍ଯ୍ୟନ୍ତ ବହୁପ୍ରକାରର କଥା, ଅନେକ କଥା ପଡ଼ିଲା ।

ସେ ଦୁଃଖପ୍ରକାଶ କଲେ ଯେ, ଆଜିକାଲି କବି ଓ ଲେଖକ-ମାନେ ବିଶେଷ କିଛି ପଢ଼ାଶୁଣା କରୁ ନାହାନ୍ତି । ସାହିତ୍ୟ ସୃଷ୍ଟିକୁ ସଉଖୀନ କାର୍ଯ୍ୟକ୍ରମ ଭାବରେ ଗ୍ରହଣ କରୁଛନ୍ତି । ଓଡ଼ିଆ ସାହିତ୍ୟ ପାଇଁ ଏହା ଭଲ କଥା ନୁହେଁ ।

*　　*　　*

ଦେଖି ଆଶ୍ଚର୍ଯ୍ୟ ଲାଗେ ଯେ, ଉକ୍ତର ମାନସିଂହ ଚିହ୍ନା-ଅଚିହ୍ନା, ଜଣା-ଅଜଣା, ବନ୍ଧୁ ବିରୋଧୀ ପ୍ରତ୍ୟେକଙ୍କ ଚିଠିର ଉତ୍ତର ଦିଅନ୍ତି । ଡେରି ହେଲେ ଦୁଃଖପ୍ରକାଶ କରିବାକୁ ଭୁଲନ୍ତି ନାହିଁ ।

ଖ୍ରୀମ ଖ୍ରୋଇ ଇଂରାଜୀ ସଂକଳନ ପାଇଁ ଚିଠି ଲେଖିଲି । ସେ ଚିଠିରେ ତାଙ୍କର ସଦ୍ୟପ୍ରକାଶିତ ଇଂରାଜୀ ପୁସ୍ତକ Saga of the Land of Jagannath କଥା ଜଣାଇଥିଲି । ସଙ୍ଗେ ସଙ୍ଗେ ଉତ୍ତର ମିଳିଥିଲା । ଖ୍ରୀମଖ୍ରୋଇ ଇଂରାଜୀ ସଂକଳନରେ ତାଙ୍କ ପ୍ରକାଶିତ ପ୍ରବନ୍ଧ ପୁନଃପ୍ରକାଶ କରିବାକୁ ଅନୁମତି ଦେଇଥିଲେ ।

ଏ ସମସ୍ତ ସ୍ମୃତି ଭୁଲିବାର ନୁହେଁ, ଭୁଲି ହୋଇପାରେ ନା ।

---

ମୁଦ୍ରକ — ସ୍ୱାଗ ପ୍ରିଣ୍ଟିଂ ୱାର୍କସ୍, ଖୋଲସାହି, କଟକ-୭୫୩୦୦୧